# ଗ୍ରାମଚିତ୍ର

[ ଛୋଟ ଗପ ]

## ପ୍ରଥମ ଖଣ୍ଡ

ପ୍ରଥମ ସଂସ୍କରଣ
୧୯୩୭

ସନାତନ ମହାନ୍ତି

ମୂଲ୍ୟ—୫।୦ ଅଣା

ଏଥିରେ ଦିଆ ହୋଇଥିବା ଗୋଟିଏ ଦୁଇଟି ଗଳ୍ପ କୌଣସି କୌଣସି ମାସିକ ପତ୍ରିକାରେ ବାହାରିଥିଲା । "ବିବାହ ରହସ୍ୟ" ଏବଂ "ମୁଁ ଅଛି ମୁଁ ନାହିଁ" ଇଂରାଜୀ ଗଳ୍ପର ଛାୟା ଅବଲମ୍ବନରେ ଲିଖିତ । "କ୍ଷିପିଲର ଦଣ୍ଡ" ଇଂରାଜୀରୁ ଅନୁଦିତ । ଏହି କ୍ଷୁଦ୍ର ପୁସ୍ତକଟିର ଉଦ୍ଦେଶ୍ୟ ଅବକାଶ ରଞ୍ଜନ । ଇତି ।

ପେଠୀନ ସାହୁ<br>କଟକ<br>୩ । ୧୧ । ୩୭ } ଲେଖକ

# ସୂଚୀ



—ঃ*ঃ—




# ଇନ୍ଦୁଦେବୀ

## [ ଏକ ]

ଭାରତବର୍ଷର ପୂର୍ବପ୍ରାନ୍ତରେ ଓଡ଼ିଶା ବୋଲି ଯେଉଁ ମରୁଭୂମି ଖଣ୍ଡିକ ଅଛି, ଶୁଣାଯାଏ, ତାହା ଦିନେ ଥିଲା ସୁଜଳା ସୁଫଳା ମଳୟଜଶୀତଳା । ତାହା ଥିଲା ସ୍ୱର୍ଣ୍ଣପ୍ରସୂ, ବୀରପ୍ରସୂ, ହିନ୍ଦୁ ସ୍ୱାଧୀନତାର ଶେଷ ଆଶ୍ରୟ ଭୂମି । ସେଥିରେ ଥିଲା କାବ୍ୟ କବିତା କାହାଣୀର କେଳିକୁଞ୍ଜ । ତାର ନଦୀ-ପର୍ବତ ବନାନୀରେ ଥିଲା ସ୍ୱାସ୍ଥ୍ୟ ଏବଂ ସୌନ୍ଦର୍ଯ୍ୟ । ତାର ସମୁଦ୍ରତଟରେ ପ୍ରଶସ୍ତ ପ୍ରସ୍ତରପଟ ଉପରେ ଫୁଟି ଉଠିଥିଲା ସ୍ଥପତିର ଯେଉଁ ସୁରୁଚିରଲେଖା, ତାହା ଯେପରି ବଳିଷ୍ଠ ସେହିପରି ସୁକୁମାର, ଯାହାର ଭଗ୍ନାବଶେଷ ଆଜି ମଧ୍ୟ ସମଗ୍ର ପୃଥିବୀର ବିସ୍ମୟ ଉତ୍ପାଦନ କରୁଛି । କିନ୍ତୁ ସେଦିନ ଆଉ ରହିଲା ନାହିଁ । ସମୟର ରଥଚକ୍ର ଆବର୍ତ୍ତନରେ ଗଲା ଚାଲିକି । ଦେଶ ଉପରକୁ ମାଡ଼ି ଆସିଲା ଅନାହାର, ଦୁର୍ଭିକ୍ଷ, ମହାମାରୀ, ମଡ଼କ, ଅତିବୃଷ୍ଟି, ଅନାବୃଷ୍ଟି, ବନ୍ୟାବିପତ୍ତି ଏବଂ ଅବିଦ୍ୟାର ପୁଞ୍ଜୀଭୂତ ଅନ୍ଧକାର । ତା ପରେ, ଯେତେବେଳେ ଭାରତ-ଆକାଶରେ ପଶ୍ଚିମରୁ ନୂତନ ସଭ୍ୟତାର ପ୍ରବଳ ପ୍ରଭଞ୍ଜନ ବୋହିବାକୁ ଆରମ୍ଭ କଲା, ସେ ହେଉଛି ଊନବିଂଶ ଶତାବ୍ଦୀର ମଧ୍ୟଭାଗ । କିନ୍ତୁ ଓଡ଼ିଶାର ଏ ମରୁପ୍ରାନ୍ତରକୁ ସେ ପ୍ରଭଞ୍ଜନର ଧକ୍କା ପହଞ୍ଚିବାକୁ ବିଂଶ ଶତାବ୍ଦୀର ଏକ ଚତୁର୍ଥାଂଶ କଟି ଗଲା; ତଥାପି ତାର ଅବିଦ୍ୟାର ଅମା ଅନ୍ଧକାର, ଯାହା ଶ୍ରାବଣ ଆକାଶର ମେଘ ପରି ତାର ଦିକ୍‌ଚକ୍ରବାଳ ଆଚ୍ଛାଦନ କରିଥିଲା, ତାହାର ଏକ

# ସାମଗ୍ରିକ

କୁଣ୍ଠାଗ୍ରାଂଶ ସୁଦ୍ଧା ଅପସାରିତ ହେଲା ନାହିଁ । ତେବେ ଏହି ସଙ୍ଘର୍ଷ ଫଳରେ ବିଦ୍ୟାର ଯେ କେତୋଟି ଜ୍ୟୋତିଷ୍କ ଆକାଶକୋଣରେ ଦେଖା ଦେଇଥିଲେ, ସେମାନଙ୍କ ମଧ୍ୟରେ ଯେ ଗୋଟିଏ ଦୁଇଟି ଧୂମକେତୁ ନ ଥିଲେ, ତାହା ନୁହେଁ । ଏଲିଶା ଉଇଲ୍‌କିନ୍‌ସନ ଓରଫେ ଇନ୍ଦୁଦେବୀ ବୋଧହୁଏ ଓଡିଶାର ଏହି ଉଦୀୟମାନ ଧୂମକେତୁମାନଙ୍କ ମଧ୍ୟରୁ ଗୋଟିଏ ।

ଏଲିଶା ଓରଫେ ଏଲିର ନାମକରଣରେ ବିଶେଷ ବାହାଦୁରି ଅଛି । ଏଲିର ସାବକ ନାମ, ଅର୍ଥାତ୍ ବାପ ମା ଦେଇଥିବା ନାମ ଥିଲା, ଏଲିଶା ଏବଂ ଉପାଧି ବା ସାର୍ଗିଆ ଥିଲା ଉଇଲ୍‌କିନ୍‌ସନ୍ । ଏଲିଶା ଉଇଲ୍‌କିନ୍‌ସନ ଏହି ନାମରୁ କେହି ଯେମନ୍ତ ନ ବୁଝନ୍ତୁ ଯେ, ସେ ସାହେବ ଅବା ଫିରଙ୍ଗି ଘରର ଝିଅ । ପଖାଳଭାତଖିଆ ଖାଣ୍ଟି ଓଡିଆ ଘରର ଝିଅ ସେ । ବାପ ଗୁଣନିଧି ଉଇଲ୍‌କିନ୍‌ସନ୍ ବାଲେଶ୍ୱରର ମିଶନ ଅନାଥାଶ୍ରମରେ ବଢି ମଣିଷ ହୋଇଥିଲା ।

ଗୁଣନିଧି ଯେତେବେଳେ ଆସି ମିଶନ ଅନାଥାଶ୍ରମରେ ଭର୍ତ୍ତି ହେଲା, ସେତେବେଳେ ସେ ଅଜ୍ଞାତକୁଳଶୀଳ ଏବଂ ଅଳ୍ପ ବୟସର । ପାଦ୍ରୀ ସାହେବ ଉଇଲ୍‌କିନ୍‌ସନ୍ ଯେତେବେଳେ ତାକୁ ନାମ ପଚାରିଲେ, ସେ କହିଲା 'ଗୁଣିଆ' ; ନାମଧାମ ବଂଶପରିଚୟ ଆଉ କିଛି ଦେଇପାରିଲା ନାହିଁ, ଅବା ଦେଲା ନାହିଁ ଇଚ୍ଛା କରି । ଶାସ୍ତ୍ରରେ କୁଆଡ଼େ ଲେଖାଅଛି, ମାନବ ମାନବ ମଧ୍ୟରେ ଜାତି ସମ୍ବନ୍ଧରେ ଭେଦାଭେଦ ବ୍ରହ୍ମା ନିଜେ ସୃଷ୍ଟି କରିଥିଲେ; ଯେହେତୁ ସେ ତାର ଔଚିତ୍ୟ ନିଜ ଶରୀରରେ ଥିବା ଅଙ୍ଗପ୍ରତ୍ୟଙ୍ଗର ଭେଦାଭେଦରୁ ଆବିଷ୍କାର କରିଥିଲେ । ପାଦ୍ରୀ ସାହେବ ତ ସହଜେ ଏଭଳି ଶାସ୍ତ୍ରକୁ ମାନୁ ନ ଥିଲେ, ବରଂ ବ୍ରହ୍ମାଙ୍କର ଏହି ଷଡଯନ୍ତ୍ରକୁ ପଣ୍ଡ କରିବା ତାଙ୍କ ଜୀବନର ଗୋଟାଏ ମସ୍ତ ଉଦ୍ଦେଶ୍ୟ ହୋଇ-ପଡିଥିଲା । ଅତଏବ ଚୋଟାଏ ବଡ଼ ସୁଯୋଗ ପାଇଗଲେ ଏ ଭଳି ଶାସ୍ତ୍ରର ମିଥ୍ୟା ପ୍ରତିପାଦନ କରିବାକୁ; ଅର୍ଥାତ୍ ସେ ଇଚ୍ଛା କରିଥିଲେ ଗୁଣିଆ ଓରଫେ ଗୁଣନିଧିକୁ ; ନିଜ କଲମ ଜୋରରେ ଏକାବେଳେକେ କରଣ

ଅବା ବ୍ରାହ୍ମଣ ପଦବୀରେ ଉପନୀତ କରିବାକୁ । କିନ୍ତୁ ସେ ସୌଭାଗ୍ୟରେ ଅନ୍ତରାୟ ହେଲା ଗୁଣନିଧି ନିଜେ । ସାହେବ ଯେତେବେଳେ ରେଜେଷ୍ଟ୍ରୀରେ, ତାର ନାମ ଗୁଣନିଧି ଲେଖିଲେ, ଆଉ ତାକୁ ପଚାରିଲେ—ସେ ମିଶ୍ର, କି ଷଡ଼ଙ୍ଗୀ, କି ଶତପଥୀ ଅବା ମହାନ୍ତି, କେଉଁ ପଦବୀ ନେବ, ଗୁଣନିଧି କିଛିକ୍ଷଣ ଭାବି ଉତ୍ତର ଦେଲା, ସେ ସାହେବଙ୍କର ନିଜ ପଦବୀ ନେବ । ଏହା ଶୁଣି ସାହେବ କଲମ କାମୁଡ଼ି କିଛିକ୍ଷଣ ଚୁପ୍ କରି ରହିଲେ । ତା ପରେ ହୋ ହୋ କରି ହସିବାକୁ ଲାଗିଲେ । କିନ୍ତୁ ଯେତେବେଳେ ଦେଖିଲେ, ଗୁଣନିଧିର ମୁହଁ ସେ ହସର ଧାସରେ ଝାଉଁଳି ପଡ଼ିଲା, ସାହେବଙ୍କର ଦୟା ହେଲା । କହିଲେ, "ହଉ ହଉ, ଆଜିଠାରୁ ତୁମର ନାମ ଗୁଣନିଧି ଉଇଲ୍‌କିନ୍‌ସନ୍ ହେଲା । ଚେଷ୍ଟାକର ଏ ନାମର ଉପଯୁକ୍ତ ହେବାକୁ ।"

ଗୁଣନିଧି ଚେଷ୍ଟା କରୁ ବା ନ କରୁ, ସାହେବ କିନ୍ତୁ ଗୁଣନିଧିକୁ ଅନାଥାଶ୍ରମରେ ଲେଖାପଢ଼ା ଶିଖାଇ ଉପଯୁକ୍ତ କରିବାକୁ ଚେଷ୍ଟାର ତ୍ରୁଟି କରି ନ ଥିଲେ । ଗୁଣନିଧିର ଭାଗ୍ୟ ମନ୍ଦ; କାରଣ ପାଦ୍ରୀ ସାହେବଙ୍କର ଆନୁକୂଲ୍ୟ ଲାଭ କରି ସୁଦ୍ଧା ଏଣ୍ଟ୍ରାନ୍‌ସ କ୍ଲାସକୁ ଯାଇପାରିଲା ନାହିଁ । ଶେଷକୁ ସାହେବଙ୍କର ବିଲାତ ଯିବାର ସମୟ ହେବାରୁ ଅନ୍ୟ ଉପାୟ ନ ଦେଖି ନିଜ ସୁପାରିସ ଜୋରରେ ତାକୁ ପୁଲିସ ସବ୍‌ଇନ୍‌ସପେକ୍ଟରର କାର୍ଯ୍ୟ କରାଇଦେଲେ, ଏବଂ ବାଳିକା ଅନାଥାଶ୍ରମରେ ଥିବା ଗୋଟିଏ ସାନ୍ତାଳୀ ପିଲା ସହିତ ବାହା କରାଇଦେଇ ସାହେବ ଗଲେ ବିଲାତ ।

ଏହି ବିବାହର ଫଳ ହେଲା ଏକମାତ୍ର କନ୍ୟା ଇଲା । ସାତବରଷ ବୟସ ପର୍ଯ୍ୟନ୍ତ ଇଲା ବାଲେଶ୍ୱରରେ ରହି ପାଠ ପଢ଼ିଲା । ଘରେ ପଇସା ବଢ଼ିବା ସଙ୍ଗେ ସଙ୍ଗେ ବାପମାର ନଜର ବି ବଢ଼ିଲା । ବାଲେଶ୍ୱର ପାଠ ମନକୁ ଆସିଲା ନାହିଁ । ସ୍ଥିର କଲେ, ଝିଅକୁ କଲିକତାରେ ପଢ଼ାଇବେ କୌଣସି ମିଶନ ବାଳିକା ସ୍କୁଲରେ ରଖି । କଟକର ରେଭେନ୍‌ସା ବାଳିକା ସ୍କୁଲକୁ ସେ ପଠାଇ ପାରି

ନ ଥାନ୍ତେ, ତାହା ନୁହେଁ; ମାତ୍ର ବାଲେଶ୍ୱରର ଖ୍ରୀଷ୍ଟିୟାନ ସାଧାରଣଙ୍କ ମତ ଯେ, କଟକବାଲାଙ୍କ ଅପେକ୍ଷା କଲିକତା ଉପରେ ବାଲେଶ୍ୱରବାସୀଙ୍କ ଅଧିକାର ବେଶି, ଯେହେତୁ କଲିକତା ରେଲରେ ପହୁଞ୍ଚିବାକୁ କଟକ ଅପେକ୍ଷା ବାଲେଶ୍ୱରଠାରୁ ଦୁଇଘଣ୍ଟା ଘଣ୍ଟା କମ୍ ଲାଗେ । ଏହି କାରଣରୁ ମଧ୍ୟ ଅନେକ ବାଲେଶ୍ୱରବାସୀ ଓଡିଆ ଖ୍ରୀଷ୍ଟିୟାନ ଘରେ ଆପଣା ଭିତରେ କଥାବାର୍ତ୍ତା ଓଡିଆରେ ନ କରି ବଙ୍ଗଳାରେ କରିବାର ଔଚିତ୍ୟ ଅନୁଭବ କରନ୍ତି । ଅତଏବ ଏହି ସବୁ କାରଣରୁ ସାତବରଷ ବୟସରୁ ଏଲି ହେଲା କଲିକତାବାସୀ ।

ସୁତରାଂ ଏଲିର ଗୋଟାଏ ମସ୍ତବଡ଼ ଗର୍ବ ଯେ, ସେ ଅନ୍ୟାନ୍ୟ ଓଡିଆ ଖ୍ରୀଷ୍ଟିୟାନ ଝିଅଙ୍କ ପରି କୂପମଣ୍ଡୂକ ନୁହେଁ—ଅର୍ଥାତ୍ କଟକରେ ରହି ପାଠପଢି ନାହିଁ;ମୂଳରୁ ଶେଷ ପର୍ଯ୍ୟନ୍ତ କେବଳ କଲିକତାରେ ରହି ପଢିଚି । ଅବଶ୍ୟ ଛୁଟି ସମୟରେ ଓଡିଶାକୁ, ଅର୍ଥାତ୍ ବାଲେଶ୍ୱରକୁ ଆସେ ଅନେକଟା ବାଧ୍ୟବାଧକତାରେ । କାରଣ କରିବ, ବାପ ମା ଅଛନ୍ତି; ତାହା ନ ହେଲେ ବାଲେଶ୍ୱର ପରି ଗାଉଁଲି ଗାଁରେ ବାରବରଷରେ ଥରେ ତା ପାଦ ପଡିବା ଦୁଷ୍କର ହୋଇଥାନ୍ତା । ସେଥିପାଇଁ ହେମ, ସ୍ୱାତି, ଆଉ କୁସୁମ ଯେତେବେଳେ କଟକ ରେଭେନ୍ସା ବାଳିକା-ସ୍କୁଲରୁ ଆଇ. ଏ. ପାଶ କରି ବି. ଏ. ପଢିବା ସକାଶେ କଲିକତାର ଇଉନିୟନ୍ ହଷ୍ଟେଲରେ ଏଲିର ସହବାସୀ ହେଲେ, ସେମାନେ ଯେ ତାଠୁ ତେର ନିକୃଷ୍ଟତର ସ୍ଥାନରୁ ଆସିଛନ୍ତି ଏବଂ ସେମାନଙ୍କ ଦେହ ମନ ଓ ଗ୍ଭଲିଚଳନରୁ ଯେ ଗଣ୍ଡଗାଁର ଗନ୍ଧ ଯାଇ ନାହିଁ, ଏ କଥା ସମୟରେ ଅସମୟରେ, କାରଣରେ ଅକାରଣରେ ସେମାନଙ୍କୁ ସ୍ମରଣ କରାଇବାରେ ଏଲି କୌଣସି କୃପଣତା କରୁ ନ ଥିଲା । ବରଂ ତାର ମନେ ହେଲା, କେତେଗୁଡାଏ ଜାନୁଆରଙ୍କୁ ସଭ୍ୟ ଭବ୍ୟ କରିବାର ଗୁରୁଭାର ଭଗବାନ ତା ଉପରେ ଲଦି ଦେଇଛନ୍ତି । ସେମାନେ ମଧ୍ୟ ତା ମୁରବିଆନାକୁ ଅନେକ ପରିମାଣରେ ନିର୍ବିବାଦରେ ସ୍ୱୀକାର କରୁଥିଲେ । ତାର ପ୍ରଥମ କାରଣ ହେଉଛି, ସେମାନଙ୍କ ଦୃଷ୍ଟିରେ ତାର କଲିକତାର ଅଭିଜ୍ଞତା ଅଗାଧ,ଦ୍ୱିତୀୟ ସେ ସେମାନଙ୍କଠୁଁ ବର୍ଷେ

## ଇନ୍ଦୁଲେଖା

ଉପରେ, ଅର୍ଥାତ୍ ଫୋର୍ଥ ଇୟର କ୍ଲାସରେ, ଯଦବା ସେମାନଙ୍କ ସହିତ ବେଥୁନ୍ କଲେଜରେ ନ ପଢି ସେ ସ୍କଟିସ୍‌ରେ ପଢୁଥିଲା ।

ଦିନେ କୁସୁମ ପଚାରିଲା, "ଏଲି ଅପା, ଅଚ୍ଛା, ଟୋକାଙ୍କ ସାଙ୍ଗରେ କଲେଜରେ ପଢିବାକୁ ତତେ ଲାଜମାଡ଼େ ନାହିଁ ? ତମେ ଦି ଚାରିଜଣ ଟୋକୀ ତିନି ଚାରିଶ ଟୋକାଙ୍କ ମେଳରେ କେମିତି ପଢ ? ତୋର ଭାରି ସାହସ !" ଏଲି କହିଲା, "ମୋର ସାହସ ଅଛି କି ନାହିଁ, ଜାଣେ ନାହିଁ, ବୋଧହୁଏ ଅଛି; କିନ୍ତୁ ଲାଜ ଯେ ମାଡ଼େ ନାହିଁ, ଏ କଥା ସତ । ଲାଜମାଡ଼େ ବୋଧହୁଏ ବେଶିକରି ଟୋକାମାନଙ୍କୁ । ସେମାନଙ୍କର ଫୁର୍ତ୍ତି ବାହାରେ ଆମ ଆଖପାଖରେ ମେଲା ମେଲା ହୋଇ ବୁଲିବାବେଳେ; କିନ୍ତୁ ଯେତେବେଳେ ଦରକାର ପଡ଼େ ଆମ ସାଙ୍ଗରେ କଥା କହିବାକୁ, ମୁହଁରୁ କଥା ବାହାରେ ନାହିଁ, ଇଚ୍ଛା ଥିଲେ ମଧ୍ୟ ଲାଜରେ ଆମ ସାଙ୍ଗରେ କଥା କହିପାରନ୍ତି ନାହିଁ ।" ହେମ ପଚାରିଲା, "ତୁ କଣ କଲେଜରେ ବି ବଙ୍ଗାଳୀ ଟୋକୀଙ୍କ ପରି ମୁଣ୍ଡରୁ ଲୁଗା କାଢି ବସୁ ?" ଏଲି କହିଲା, "ମୁଣ୍ଡରୁ ଲୁଗା କାଢିଲେ କଣ ପାପ ହେଲା ? ତୁ ବେକୁଫ୍, ସେଥିପାଇଁ ତୋର ଏ କୁମ୍ଭକୁମ୍ଭିଆ ଗହଳିଆ ବାଳକୁ ଲୁଗାକାନିରେ ଘୋଡ଼ାଉଥାଉ । ଆଲୋ, ବତୀ ଜଳାଇ ଦୀପରୁଖା ଉପରେ ରଖନ୍ତି, ମାଣତଳେ ଘୋଡ଼ାନ୍ତି ନାହିଁ ।" ସାବି କହିଲା—"ମୁଣ୍ଡ ଖୋଲିବୁ ,ଟୋକାମାନେ କ୍ଲାସରେ ମାଷ୍ଟର ନ ଥିଲାବେଳେ ପଛାଡୁ ତୋ ଚୁଟି ଟାଣନ୍ତି ନାହିଁ ।"ଏଲି ଉତ୍ତର କଲା, "ଏତେ ବଡ଼ ହେମ,ମୋର ବିନା ହୁକୁମରେ ମୋ ଦେହରେ ହାତ ଦେବେ ?" ସାବି ପଚାରିଲା,"ତୁ କଣ ତୋ ଦେହରେ ହାତ ଦେବାକୁ ତାଙ୍କୁ ବେଳେ ବେଳେ ଅନୁମତି ଦେଉ କି ?" ଉତ୍ତରରେ ଏଲି କହିଲା, "କାହିଁକି ? ହାତ ଦେଲେ କଣ ମୋ ଦେହ ଛଣ୍ଡିସିବ କି ? ତୁ ତ ମୋ କାନ୍ଧରେ ହାତ ଦେଇଛୁ, ମୋର କଣ ଦେହ ଛଣ୍ଡି ଯାଉଛି ?" ସାବି କହିଲା "କଣ କହିଲୁ ? ମୁଁ ଝିଅଟା, ଆଉ ପରପୁଅ ତୋ ଦେହରେ ହାତ ଦେଲେ ମୁଁ ହାତ ଦେଲା ପରି ହେଲା ? ତୁ ବଡ଼ ବେହିୟା !" ଏଲି କହିଲା, "ଅନ୍ଧାର ମୁଲକରୁ ଆସିଛୁ, ମାନ୍ଧାତା ଅମଳର କଥା

କହୁବୁ ନାହିଁ ତ କଣ କହୁବୁ ? ବର୍ତ୍ତମାନ ଜଗତରେ ଗଣ୍ଡ ବୁଝୁଛୁ ? ପୁରୁଷଙ୍କ ସାଙ୍ଗରେ ସମଯୋଦ୍ଧ ହୋଇ କାମ କରିବାକୁ ପଡିବ । ଯଦି ପାଠରେ ସ୍ତ୍ରୀ ପୁରୁଷର ପ୍ରଭେଦ ରଖିବ ନାହିଁ, କାମଦାମରେ ପ୍ରଭେଦ ରଖିବ ନାହିଁ, ତେବେ କାମ କଲା ବେଳେ, କି ବସିଲା ବେଳେ, କି ଉଠିଲା ବେଳେ ଟିକେ ତାଙ୍କ ସାଙ୍ଗରେ ଦେହ ଘଷି ହୋଇଗଲେ କାହିଁକି ମହାଭାରତ ଅଶୁଦ୍ଧ ହୋଇଯିବ ?" ହାସି ପଚାରିଲା, "ତୁ କଣ ମହାଭାରତ ଶୁଦ୍ଧ ରଖିବାକୁ ଆମକୁ ଛାଡି ଟୋକାଙ୍କ ସାଙ୍ଗରେ ଆଉଟିଂରେ ଯିବାକୁ ଏଇଥିପାଇଁ ଭଲ ପାଉ ?" ଏଲି କହିଲା, "ମୂର୍ଖ ତୁ, ମୁଁ ଦେଖୁଛି ମୁଁ ନ କହିଲେ, ମୋର ମନର ଭାବ ବୁଝିବା ତୋ ପକ୍ଷରେ ଅସମ୍ଭବ ହେବ । ଆଲୋ ଦେଖିଛୁ ବିଲେଇ କେମିତି ମୂଷାକୁ ଖେଳାଏ । ଏ ଟୋକାଗୁଡ଼ା ହେଉଛନ୍ତି ମୋର ଶିକାର, ଆଉ ମୁଁ ହେଉଛି ତାଙ୍କ ମୁଣ୍ଡ ଖାଇବା ପାଇଁ ବାଘୁଣୀ । ମୁଁ ହେଉଛି ମରୀଚିକା, ଯାହା ଉତ୍ତପ୍ତ ମରୁପ୍ରାନ୍ତରରେ ତୃଷାର୍ତ୍ତ ପଥିକକୁ ଉଦ୍‌ଭ୍ରାନ୍ତ କରେ, ଧରା ଦେଇ ଧରା ଦିଏ ନାହିଁ । ଆଗ୍ନେୟ ଗିରି କଥା ପଢିଥିବୁ । ମୁଁ ପୁରୁଷଙ୍କ ପକ୍ଷରେ ଭିସୁଭିୟସ୍ । ମୋର ଉପରଟା ଦେଖିବାକୁ ମନୋହରକାନ୍ତି, ନବଦୂର୍ବାଦଳ-ଶ୍ୟାମ, ହୁଏ ତ କଣ୍ଠରେ ପକ୍ଷୀର କଳକୂଜନ ଅଛି, ଅଙ୍ଗରୁ ମଳୟର ଗନ୍ଧ ଭେଦି ବହୁଛି; କିନ୍ତୁ ଭିତରେ ଦଗ୍‌ଧକଙ୍କରବାହୀ ତରଳ ଧାତୁନିଃସ୍ରବ ଅଧୈର୍ଯ୍ୟ ହୋଇ ଆତ୍ମପ୍ରକାଶର ଛିଦ୍ର ଅନ୍ୱେଷଣ କରୁଛି । ଇଚ୍ଛା, ଏହି ଯେ ପୁରୁଷଗୁଡ଼ା ପର୍ବତ ଉପରେ ଚରୁଥିବା ମେଣ୍ଢାପଲ ପରି ମୋ ସଂସ୍ରବରେ ଆସିଛନ୍ତି, ତାଙ୍କୁ ଉତ୍‌କ୍ଷିପ୍ତ ଲୋଷ୍ଟ୍ରବତ୍ ଯଥାଶକ୍ତି ଇତସ୍ତତଃ ଛିନ୍ନଭିନ୍ନ କରି ପକାଏ ।"

କୁସୁମ ଏଲିର କୋଧର ଏହି ଭୀଷଣ ଅଭିବ୍ୟକ୍ତି ଦେଖି ଶଙ୍କିଯାଇ ପଚାରିଲା, "ଏଲି ଅପା, ତୋର କାହିଁକି ପୁରୁଷଙ୍କ ଉପରେ ଏଡ଼େ ରାଗ ?"

ଏଲି କୁସୁମ ଆଡକୁ ଅନାଇଲା , ବ୍ୟାଘ୍ରୀ ଶିକାର ଉପରକୁ ଝାମ୍ପିବା ପୂର୍ବରୁ ଯେପରି ତା ଆଡ଼କୁ ଅନାଏ । କୁସୁମର ଦୃଷ୍ଟିରେ ବାଳିକା-ସୁଲଭ

# ଇନ୍ଦ୍ରଦେବୀ

ସରଳତା ନିଜର ଅନର୍ଗଳ ପ୍ରଗଳ୍‌ଭତାରେ ଆତଙ୍କିତ ହେବା ଛଡ଼ା ଅନ୍ୟ କିଛି ଦୁରଭିସନ୍ଧି ଦେଖିଲି ନାହିଁ, ଅର୍ଥାତ୍ ନିଜର ଅତୀତ ଇତିହାସ କୁସୁମ ଯେ ଜାଣେ, ତାର ଚିହ୍ନ କୁସୁମର ଦୃଷ୍ଟିରେ ନ ଥିଲା । ସେଥିପାଇଁ କିଛିକ୍ଷଣ ସ୍ତବ୍‌ଧ ରହି ଏଇ ଉତ୍ତର ଦେଲା, "ପୁରୁଷଙ୍କ ପରି ଠକ ଏବଂ ପର ଘରବୁଡ଼ା ଜୀବ ଜଗତରେ ନାହାନ୍ତି । ସେମାନେ ଭାବନ୍ତି ଆମେ ତାଙ୍କର ଖେଳର ସାମଗ୍ରୀ । ଆମ ସାଙ୍ଗରେ ଖେଳିବେ, ଆଉ ଆମର ସର୍ବନାଶ କରିବେ, ତା ପରେ ମୁହଁ ପୋଛିଦେଇ ବସିବେ । ସମାଜକୁ ଫେରିଯାଇ ପୁଣି ସୁନାପୁଅ ହୋଇଯିବେ, କାହିଁକି ନା ସେମାନେ ସମାଜର ପିତ୍ତଳଗରା, ମାଜିଦେଲେ ସଫା ହୋଇଯିବେ । ଆଉ ଆମେ ହେଉଛୁ ମାଟିହାଣ୍ଡି, ଏ ହାଣ୍ଡିରେ ଥରେ ଭାତ ରାନ୍ଧିଲେ ଏ ହାଣ୍ଡି ହେବ ସମାଜ ଆଖିରେ କଳା ଖପରା, ପୁନର୍ବ୍ୟବହାରର ଅଯୋଗ୍ୟ ।"

ଏହି ସମୟରେ ହଷ୍ଟେଲର ଦାସୀ ଆସି ଏଇ ହାତରେ ଗୋଟାଏ ଭିଜିଟିଂ କାର୍ଡ଼ ଦେଲା । କାର୍ଡ଼ ପାଇ ଏଇ କହିଲା, "ଏଇ ଯା, ମୁଁ ତୁମ ସାଙ୍ଗରେ ଗପରେ ମାତି ବପିନ୍ ବାବୁଙ୍କ ସାଙ୍ଗରେ ମୋର ଏନ୍‌ଗେଜମେଣ୍ଟର କଥା ଏକାବେଳକେ ଭୁଲିଯାଇଛି । କାଲି ତାଙ୍କୁ କଥା ଦେଇଥିଲି ଆଜି ମେଟ୍ରୋର ମାଟିନିକୁ ତାଙ୍କ ସାଙ୍ଗରେ ଯିବ ବୋଲି ।"

ହୀରା ପଚାରିଲା, "ଏଇ ବପିନ ବାବୁଟି କିଏ ?" ଏଇ ଲୁଗା ପିନ୍ଧିବାକୁ ଚାଲି ଯାଉଥିଲା, ଫେରିପଡ଼ି ହସି ହସି କହିଲା, 'ମୋର ବନ୍ଧୁ । ଏଇକ୍ଷଣି ବେଳ ନାହିଁ । ଫେରି ଆସିଲେ ନିକ୍କଙ୍କର ପରିଚୟ ଦେବ ।' କୁସୁମ, ହେମ ଆଉ ହୀରା ଦୋତା-ଲାର ଝିଡ଼କିରୁ ଦେଖିଲେ, ଗୋଟାଏ ଖୋଲା ଟାକ୍‌ସିରେ ଏଇ ହସି ହସି ଗଳ୍ପ କରି ଯାଉଛି ଜଣେ ବଙ୍ଗାଳୀ ଯୁବକ ସହିତ । ଯୁବକର ପିନ୍ଧିଥିବା ଲୁଗାପଟା, ରୁଚି ଆଉ ସୌଖୀନର ପରିଚୟ ଦେଉଛି । ଚେହେରାଟି ମନ୍ଦ ନୁହେଁ ।

# ସାମୟିକ

[ ଦୁଇ ]

ମୁହଁସଞ୍ଜ ହୋଇ ଆସିଲାରୁ ତିନ ବନ୍ଧୁ ଅର୍ଥାତ୍ କୁସୁମ, ହେମ, ଆଉ ସ୍ୱାସ୍ ଗଲେ ହଷ୍ଟେଲର ଛାତ ଉପରକୁ ପବନ ଖାଇବାକୁ । ହେମ କହିଲା, "ଏଲି ଗଲାଣି ଦିନ ତିନଟା ବେଳୁ । ମେଟ୍ରୋର ମ୍ୟାଟିନି ତ ପାଞ୍ଚଟା ବେଳକୁ ଭାଙ୍ଗେ । ଆସି ସଞ୍ଜ ହେଲାଣି; କାହିଁ ଫେରିଲା ତ ନାହିଁ ?"

ସ୍ୱାସ୍ ଉତ୍ତର ଦେଲା, "କଣ ଖାଲି ମ୍ୟାଟିନିକି ଯାଇଛି ? ସାତେଯାଏ ନ ହେଲେ ସେ ଫେରିବ ? ଆଲୋ, ତୁ ଆଉ ମୁଁ ଯେମିତି ଏଠି ପବନ ଖାଉଛୁ, ସେ ବି ଅବା ତା ବନ୍ଧୁ ସଙ୍ଗରେ ରେଡ୍‌ରୋଡ଼୍ କି ଇଡ଼େନ୍ ଗାର୍ଡ଼େନ୍‌ରେ ପବନ ଖାଉଥିବ ।"

ହେମ କହିଲା, "ମୋର ମନେ ହୁଏ ତୁମ୍ଭେମାନେ ଏଲିର କଥାକୁ ଯେତେଟା ଦୋଷଜନକ ମନେ କର, ତାହା ସେତେଟା ଦୋଷଜନକ ନୁହେଁ । ତୁମେ ଯାହା କୁହ, ମୁଁ ବିଶେଷ କରି ତାର ଗୋଟିଏ କଥାକୁ ପସନ୍ଦ ନ କରି ରହିପାରେ ନାହିଁ । ପୁରୁଷଙ୍କ ସହିତ ସମାନ ଅଧିକାର ଦାବୀ କରିବାରେ ତାର ଯୋଉ ସାହସ ଏବଂ ତଦନୁଯାୟୀ କାର୍ଯ୍ୟ ଓ କଥାବାର୍ତ୍ତାକୁ ମୋତେ ବାଧ ହୋଇ ପ୍ରଶଂସା କରିବାକୁ ହୁଏ । ଦେଖ, ସେ ଆମ ପରି ମୁହଁଚୋରି ନୁହେଁ ।"

ସ୍ୱାସ୍ ଉତ୍ତର ଦେଲା, "ମୁଁ ସ୍ୱୀକାର କରୁଛି, ମୋର ଏଇଟା ଦୁର୍ଭାଗ୍ୟ ଯେ, ମୁଁ ଏ ପର୍ଯ୍ୟନ୍ତ ଦେଖିପାରୁ ନାହିଁ, ପୁରୁଷଙ୍କ ସହିତ ଆମର କଳି କରିବାର କାରଣ କୋଉଠି । କଣ ଆମେ ପୁରୁଷ ନୋହୁଁ, ଏହି କ୍ଷୋଭ ? ତୁଳନା-ଯୋଗ୍ୟ ସମତା ଯଦି ଥାନ୍ତା, ତାହା ହେଲେ ପ୍ରଭେଦର ତାରତମ୍ୟକୁ ହ୍ରାସ ବୃଦ୍ଧି କରିବାର ପ୍ରୟାସରେ ଉଭୟ ପକ୍ଷର ଦ୍ୱନ୍ଦ୍ୱରୁ ଔଚିତ୍ୟ କହିତ ପରିମାଣରେ ବୁଝି ହୁଅନ୍ତା । ଆଜିକାଲି ନାରୀ, ବିଶେଷତଃ ବର୍ତ୍ତମାନର ଶିକ୍ଷିତା

ନାରୀ, ପୁରୁଷ ଏବଂ ସ୍ତ୍ରୀ ମଧ୍ୟରେ ମୂଳଗତ ଯେଉଁ ପାର୍ଥକ୍ୟ ତାକୁ ଭୁଲିଯାଏ; ସେଥିପାଇଁ ଉଭୟ ପକ୍ଷର କେବଳ ଭୋଗର ନୁହେଁ, ମାତ୍ର କର୍ତ୍ତବ୍ୟର ଅଧିକାର ଯେ ଏହି ମୂଳଗତ ପାର୍ଥକ୍ୟ ସକାଶୁ ଅସମାନ ରହିବ, ତାହା ମଧ୍ୟ ଭୁଲିଯାଏ। ଆଉ ଭୁଲ କରୁଥାଏ ପୁରୁଷ କାହିଁକି ଏହା କରିବ, ମୁଁ କରିବି ନାହିଁ, ପୁରୁଷ କାହିଁକି ଏହା ଭୋଗିବ, ମୁଁ ଭୋଗିବି ନାହିଁ।"

ହେମ କହିଲା, "ହାସ, ତୋ କଥାରୁ ମୁଁ ବୁଝୁଛି, ଯେହେତୁ ସ୍ତ୍ରୀ ଆଉ ପୁରୁଷ ମଧ୍ୟରେ ଶରୀରର ଗଠନଗତ ପାର୍ଥକ୍ୟ ଅଛି, ଅତଏବ ସେମାନଙ୍କର ଜୀବନର ସମସ୍ତ କାର୍ଯ୍ୟକଳାପ ମଧ୍ୟରେ ସେମାନେ ପାର୍ଥକ୍ୟ ରକ୍ଷା କରିବେ। ଏ କଥା ଭୁଲିଲେ ଚଳିବ ନାହିଁ ଯେ, ଏହି biological difference ଟା ସମୟ ଅନୁକ୍ରମରେ ଘଟିଥିବା ଗୋଟାଏ ଆକସ୍ମିକ ଘଟଣା। ଅନ୍ତତଃ ବିଜ୍ଞାନ ପ୍ରମାଣ କରୁଛି ଯେ, ଜଗତର ଇତିହାସରେ ଏପରି ଗୋଟିଏ ସମୟ ଥିଲା, ଯେତେବେଳେ, ଯାହା କିଛି ଜୈବ, ନିଜ ଦେହରେ ସ୍ତ୍ରୀ ଆଉ ପୁରୁଷ ଉଭୟଙ୍କର ସମାବେଶ ଧାରଣ କରୁଥିଲା। ଅତଏବ ଯଦିବା କାଳକ୍ରମେ ଏହି ଦୁଇ ଅଂଶ ଦୁଇ ପୃଥକ୍ ଦେହ ଧାରଣ କଲେ, ଏ ଦୁହେଁ ଯେ ମାନବିକତାର ସମତଳ ଭୂମି ଉପରେ ସମାନ ଭାବରେ ଦଣ୍ଡାୟମାନ, ଏ କଥା ଅସ୍ୱୀକାର କରି ହେବ ନାହିଁ ଏବଂ ଯାହା କିଛି ଏହି ମାନବତାକୁ ସଫଳତା ପ୍ରଦାନ କରେ, ସେ ସବୁଥିରେ ଏ ଦୁଇଜଣଙ୍କର ଅଧିକାର ଯେ ସମାନ, ତାହା ମଧ୍ୟ ଅସ୍ୱୀକାର କରି ହେବ ନାହିଁ।"

ଉତ୍ତରରେ ହାସ କହିଲା, "ପ୍ରଭେଦଟା କଣ କେବଳ biological? ଆଉ ଅଧିକ କିଛି ନୁହେଁ? ଆଧୁନିକ ସଭ୍ୟ ସମାଜରେ ଅଧିକାର ନେଇ ଯେଉଁ କଳହ ବଢି ଉଠିଛି ସ୍ତ୍ରୀ ପୁରୁଷ ମଧ୍ୟରେ, ମୋର ମନେ ହୁଏ, ତା ମୂଳରେ ଅଛି ହୀନ ମନୋଭାବ; କେବଳ ଅଧିକାରର ଅସମାନତା ନୁହେଁ। ପୁରୁଷ ଆଉ ସ୍ତ୍ରୀ ମଧ୍ୟରେ କାର୍ଯ୍ୟ ଆଉ ଭୋଗର ଅଧିକାର ଅସମାନ ବୋଲି ପୁରୁଷର ଅଧିକାରଟା ଫଳତଃ ଉତ୍କୃଷ୍ଟ ଏବଂ ସ୍ତ୍ରୀର ନିକୃଷ୍ଟ, ଏହି ମନୋଭାବ ହେଉଛି ଏହି କଳହର

ମୁଖ୍ୟ କାରଣ । ଯଦି ସ୍ତ୍ରୀର ଅଧିକାରରେ ଯାହା ଅଛି, ତାକୁ ନିକୃଷ୍ଟ ବୋଲି ମନେକର, ତାକୁ ଉତ୍କୃଷ୍ଟ କର । ସେଥିପାଇଁ କେହି ଦୋଷ ଦେବ ନାହିଁ; କିନ୍ତୁ ଯେଉଁଟି ସ୍ତ୍ରୀ ସବୁ ବିଷୟରେ କୁହେ, ପୁରୁଷ ଏହା କରୁଛି, ମୁଁ କରିବି, ସେଟି ମୋର ମନେ ହୁଏ, ସ୍ତ୍ରୀର ଅଧିକାରର ଉନ୍ନତି କରିବାକୁ ସେ ଚେଷ୍ଟା କରୁ ନାହିଁ, ଚେଷ୍ଟା କରୁଛି ପୁରୁଷ ହେବାକୁ । ଏଲିକୁ ଏହି ରୋଗ ଧରିଛି । ସେ ବୁଝିପାରୁ ନାହିଁ, ପୁରୁଷର ଏହି ଅବାରିତ ଅନୁକରଣରେ ଆଉ କିଛି ଲାଭ ହେଉ ନ ହେଉ, ଅନ୍ତତଃ ସ୍ତ୍ରୀତ୍ୱର ଅବମାନନା ହେଉଛି ।"

ହେମ କହିଲା, "ସାର୍, ଏଇକ୍ଷଣି ପରା ଶୁଣିଲୁ, ତାର ଜୀବନର ଉଦ୍ଦେଶ୍ୟ ପୁରୁଷଙ୍କ ମୁଣ୍ଡ ଖେଞ୍ଚିଦେଇବା ?"

ସାର୍ କହିଲେ, "ଏଲିର ଉଦ୍ଦେଶ୍ୟ ମୁଁ ସନ୍ଦେହ କରୁ ନାହିଁ । ଯେଉଁ ଉପାୟ ଅବଲମ୍ବନ କରୁଛି, ତାରି କଥା କହୁଛି। ଅବଶ୍ୟ ଯେଉଁ କାରଣରୁ ପୁରୁଷଙ୍କ ଉପରେ ତାର ଏତେ ରାଗ, ସେଥିରେ ଉତ୍ୟକ୍ତ ହେବା କିଛି ବିଚିତ୍ର ନୁହେଁ ।"

କୁସୁମ କହିଲା, "କହନା ସାର୍, କଣପାଇଁ ପୁରୁଷଙ୍କ ଉପରେ ତାର ଏତେ ରାଗ ? ଦେଖିଲୁ ନା, ମୁଁ ଯେତେବେଳେ ତାର ରାଗର କାରଣ ପଚାରିଲି, ସେ କେମିତି କଟମଟ କରି ମୋ ଆଡ଼କୁ ଚାହିଁଲା ।"

ସାର୍ କହିଲେ, "କୁସୁମ, ତତେ ଆଗେ ମୁଁ ଯେଉଁ ପରାମର୍ଶ ଦେଉଛି, ମନରେ ରଖ । ଦେଖ,ପ୍ରଭାତବାବୁଙ୍କ ସହିତ ତୋର ଯେ ବିଭା ହେବାର କଥା-ବାର୍ତ୍ତା ଚାଲିଛି, ସେ କଥା ଯେମିତି ଏଲି କାନରେ ନ ପଡେ । ଏଲିକୁ ଚିହ୍ନି-ବାକୁ ତୁମ ଦୁଇ ଜଣକୁ ଡେର ସମୟ ଲାଗିବ । ସେ ହେଉଛି ଲାଙ୍ଗୁଡ଼କଟା କୋକି । ତା ଲାଙ୍ଗୁଡ଼ ଯେତେବେଳେ କଟିଯାଇଛି, ଅନ୍ୟ କିଲୁଆଙ୍କର ଲାଙ୍ଗୁଡ଼ କେମିତି କଟା ହେବ, ସେହି ଚିନ୍ତା ବର୍ତ୍ତମାନ ତାକୁ ବ୍ୟସ୍ତ କରୁଛି ।"

ହେମ ବିରକ୍ତ ହୋଇ କହିଲା, "କହନା ତାର କଳଙ୍କିତ କଥା ହୋଇଛି ? ଉପଦେଶ ପଛେ ଦେବୁ ।"

ସ୍ନେହ କହିଲା—"ମୋର ବଡବୋହୂଙ୍କର ଘର ବାଲେଶ୍ବରରେ । ସେ ମୋତେ ଏଲି କଥା କହୁଥିଲେ । ବରମପୁରର ଆସିଷ୍ଟାଣ୍ଟ ସର୍ଜନ ରଙ୍ଗୀନ ବାବୁଙ୍କୁ ଜାଣୁ ? ରଙ୍ଗୀନବାବୁ ପ୍ରଥମେ ଏଲିକୁ ବିଭା ହେବାକୁ ବସିଥିଲେ; କିନ୍ତୁ ପରେ ତାର ମାଉସୀଝିଅ ସାନ ଭଉଣୀକୁ ବାହା ହେଲେ । ରଙ୍ଗୀନ୍‌ବାବୁ ଯେତେବେଳେ କଲିକତା ମେଡିକାଲ କଲେଜର ଶେଷ ବର୍ଷରେ, ସେତେ-ବେଳେ ଏଲି ଆସିଲା ସ୍କଟିଶ୍‌ରେ ଆଇ. ଏ. ପଢିବାକୁ । ରଙ୍ଗୀନ୍‌ବାବୁ ସ୍କଟିଶର ଓଲ୍‌ଡ଼ ବଏ । Old Boys' Day ରେ ପ୍ରଥମେ ଦୁଇଜଣ ଚିହ୍ନାପରିଚ ହେଲେ । ନିଜେ ପ୍ରିନ୍‌ସିପାଲ୍ ଓ୍ୟାଟ୍‌ସାହେବ ଦୁଇ ଓଡିଆଙ୍କୁ ଚିହ୍ନାଇ ଦେଲେ । ତା ପରେ ଦୁଇଜଣଙ୍କର ଘନିଷ୍ଠତା ବଢିଲା , ଚିଠିପତ୍ର ଚାଲିଲା, ସିନେମା ବାୟସ୍କୋପ, ଇଡେନ୍ ଗାର୍ଡେନ, ବଟାନିକ୍‌ସରେ ଆଉଟିଂ ଚାଲିଲା । ଦୁଇଜଣ ପରସ୍ପର ନିକଟରେ ପ୍ରତିଶ୍ରୁତ ହେଲେ ବିଭା କରିବେ ବୋଲି । ଉଭୟ ପକ୍ଷର ବାପ ମା ମଧ୍ୟ ଏ ବିବାହରେ ସମ୍ମତି ଦେଲେ । କଥା ଥିଲା, ରଙ୍ଗୀନ୍‌ବାବୁ ଡାକ୍ତର ପାସ୍ କରିବା ପରେ ବିଭାଘର ହେବ । ଗଲାବର୍ଷ ରଙ୍ଗୀନ୍‌ବାବୁ ପାସ୍ କରି ଚାକିରି ପାଇଲେ ବରମପୁରରେ । ବିଭାଘର ତାରିଖ ଧାର୍ଯ୍ୟ ହେଲା । ଗୁଣନିଧିବାବୁ ଜନିଷପତ୍ର ତ କିଣିଥିଲେ, ନିମନ୍ତ୍ରଣପତ୍ର ପର୍ଯ୍ୟନ୍ତ ଛପାଇଥିଲେ, କେବଳ ବାଣ୍ଟିବା ବାକି ଥିଲା । ବିଭାଘର ହପ୍ତାକ ପୂର୍ବରୁ ହଠାତ୍ ଶୁଣାଗଲା, ରଙ୍ଗୀନବାବୁ ଏଲିକୁ ବିଭାହେବାକୁ ନାରାଜ । ବିଭାଘର ଭାଙ୍ଗିଗଲା ।"

କୁସୁମ ପଚାରିଲା, "କାହିଁକି ଭାଙ୍ଗିଗଲା ? କାହିଁକି ରଙ୍ଗୀନ୍‌ବାବୁ ଏଲିକୁ ବାଭାହେବାକୁ ମଙ୍ଗିଲେ ନାହିଁ ?"

ସ୍ନେହ କହିଲା, "କାରଣଟା ରହସ୍ୟମୟ,ଅନ୍ତତଃ ବାହାରକୁ ସ୍ପଷ୍ଟ ଜଣା-ପଡ଼ ନାହିଁ । ମୁଁ ବଡ଼ବୋହୂଙ୍କ ପାଖରୁ ଯାହା ଶୁଣିଛି, ତା' ତମକୁ କହୁଛି । ତା' କେତେ ସତ, କେତେ ଅତିରଞ୍ଜିତ, ମୁଁ କହିପାରିବ ନାହିଁ ।"

# ସାମୟିକ

ଏଲିର ମାଉସୀ ଝିଅ ଶାନ୍ତିର ଘର ବ୍ରହ୍ମପୁରରେ । ସେ ଏଲିଠୁଁ ବର୍ଷ ଦୁଇ ସାନ; କିନ୍ତୁ ଦେଖିବାକୁ ଏଲିଠୁଁ ଢେର ଭଲ । ଏଲି ଅବଶ୍ୟ ଶରୀର ପ୍ରସାଧନରେ ଆଉ ଲୁଗାପଟା ପିନ୍ଧିବାର ହାଲି ଫ୍ୟାଶନରେ ଶାନ୍ତିଠୁଁ ଅଧିକ ଧୁରନ୍ଧର । ସେଥିପାଇଁ ତାର ଚୁକଚକ୍ୟଟା ଆଖିକୁ ଝଲସାଇ ଦିଏ । ଅର୍ଥାତ୍ ଶାନ୍ତି ସ୍ୱଭାବତଃ ସୁନ୍ଦରୀ; ଏଲିକୁ ସାଜିବାକୁ ହୁଏ । ରଙ୍ଗୀନ ବାବୁର ଘର ବି ବରମପୁରରେ । ଶାନ୍ତି ଆଉ ତାଙ୍କର ଘର ମଧ୍ୟରେ ଘନିଷ୍ଠତା ଥିବାରୁ ସେ ଶାନ୍ତି ସହିତ ସ୍ୱଚ୍ଛନ୍ଦରେ ମିଳାମିଶା କରୁଥିଲେ । ରଙ୍ଗୀନବାବୁ ଯେତେବେଳେ ପାସ୍ କରି ବରମପୁରରେ ଚାକିରି ପାଇଲେ, ସେତେବେଳେ ଶାନ୍ତି ରେଭେନ୍‌ସା ବାଳିକା ସ୍କୁଲରେ ମ୍ୟାଟ୍ରିକ ପରୀକ୍ଷା ଦେଇ ଆସି ଘରେ ବସିଥାଏ । ଏଲିର ବାହାଘର ପନ୍ଦର ଦିନ ପରିକି ଅଛି, ଦିନେ ଶାନ୍ତି ଏଲିଠୁଁ ତାର ବାହାଘର ବିଷୟରେ ଚିଠି ପାଇଲା । ରଙ୍ଗୀନବାବୁ ଯେ ଏଲିକୁ ବାହା ହେବ, ଏ ଖବର ସେ ପର୍ଯ୍ୟନ୍ତ ସେ ଜାଣି ନ ଥିଲା; କଟକରେ ପଢାଶୁଣାରେ ବ୍ୟସ୍ତ ଥିଲା । ସେ ଖବର ତା ପକ୍ଷରେ ଏଡ଼େ ହଠାତ୍ ହେଲା ଯେ, ସେ ଚିଠି ପଢିବାମାତ୍ରେ 'ମାଲୋ' କହି ମୂର୍ଚ୍ଛା ଗଲା । ରଙ୍ଗୀନ୍ ବାବୁଙ୍କୁ ଡ଼ାକ ପଡିଲା । ଶେଷ ମାସେ ଦୁଇମାସ ହେବ ରଙ୍ଗୀନ୍‌ବାବୁ ଶାନ୍ତି ଘରକୁ ଯାଉ ନ ଥିଲେ, ଅର୍ଥାତ୍ ଏଲି ସହିତ ବାହା ସ୍ଥିର ହେଲା ଦିନଠାରୁ ଅପରାଧୀ ପରି କରିଛଡ଼ା ଦେଉଥିଲେ । ଅବଶ୍ୟ ଶାନ୍ତି ସହିତ ତାଙ୍କର ଭାଇ ଭଉଣୀର ସମ୍ପର୍କ ଛଡ଼ା ଯେ ଅଧିକ କିଛି ଥିଲା, ଏହା ସେ ଦିନ ପର୍ଯ୍ୟନ୍ତ ଶାନ୍ତିର ମା ବାପ ସୁଦ୍ଧା ଜାଣି ନ ଥିଲେ । ସେଥିପାଇଁ ଶାନ୍ତିର ଏହି ଆକସ୍ମିକ ଦୁର୍ଘଟଣା ଶୁଣି ଯେତେବେଳେ ରଙ୍ଗୀନ ବାବୁ ଆଙ୍ଗୁ ଆଙ୍ଗୁ ହୋଇ ଆସିଲେ, ତାଙ୍କର ଏହି ଭାବାନ୍ତର ସେମାନେ ଲକ୍ଷ୍ୟ କରି ନ କଲା ପରି ରହିଲେ । ଭାବିଲେ, ବିପଦରେ ଏପରି ଉଦାସୀନତା ଦେଖାଇବା ଡାକ୍ତରର କର୍ତ୍ତବ୍ୟ । ଅବଶ୍ୟ ରଙ୍ଗୀନ ବାବୁଙ୍କ ଶୁଶ୍ରୂଷାରେ ଶାନ୍ତିର ମୂର୍ଚ୍ଛାଭଙ୍ଗ ହେଲା । କିନ୍ତୁ ଭୀଷଣ ଜ୍ୱର ସାଙ୍ଗେ ସାଙ୍ଗେ ଦେଖାଦେଲା ଏବଂ ଫଳରେ ଆଖି ନ ଫିଟାଇ ଶାନ୍ତି ପ୍ରଳାପ ବକିବାକୁ ଆରମ୍ଭ କଲା । କେତେବେଳେ ବା ରଙ୍ଗୀନ 'ବାବୁଙ୍କୁ ଅନୁନୟ ବିନୟ କଲା—

ଯେମିତ ସେ ତାଙ୍କୁ ପରିତ୍ୟାଗ ନ କରେ; କେତେବେଳେ ବା ଏଲି ପାଖରେ ନିବେଦନ କଲି—ରଙ୍ଗୀନବାବୁଙ୍କୁ ଛାଡ଼ିଦେବାକୁ । ଶାନ୍ତର ବାବା ଏ ସବୁ ପ୍ରଳାପ ଉକ୍ତି ଶୁଣି ରଙ୍ଗୀନ ବାବୁଙ୍କୁ ଅନ୍ୟ ଘରକୁ ଡ଼ାକି ନେଇ ଏହାର ସତ୍ୟାସତ୍ୟ ବୁଝିଲେ । ବୁଝିଲେ, ଶାନ୍ତ ରଙ୍ଗୀନବାବୁର ପ୍ରଣୟାସକ୍ତ, ଯଦି ବା ବିଭା ସମ୍ବନ୍ଧରେ ଉଭୟଙ୍କ ମଧ୍ୟରେ କୌଣସି ମୌଖିକ କଥାବାର୍ତ୍ତା ହୋଇ ନାହିଁ । ତା ପରେ ରଙ୍ଗୀନବାବୁ ବାଲେଶ୍ୱର ଯାଇ ଏଲି ସାଙ୍ଗରେ ଦେଖାକଲେ । ଶୁଣାଯାଏ, ଏଲି କୁଆଡେ ତାଙ୍କୁ ଛାଡିବାକୁ ଏକାବେଳକେ ନାରାଜ ହେଲା । ଯେତେବେଳେ ରଙ୍ଗୀନ ବାବୁ କହିଲେ, "ଏଲି, ତୁମକୁ ବିଭା ହେବାକୁ ମୁଁ ଯେ କଥା ଦେଇଥିଲି , ନିଶା ଖାଇଥିବା ଲୋକର କଥାରେ ଯେପରି କିଛି ମୂଲ୍ୟ ନାହିଁ, ସେହିପରି ମୋର ସେ କଥାର କିଛି ମୂଲ୍ୟ ନାହିଁ । ମୁଁ ବର୍ତ୍ତମାନ ବୁଝୁଛି, ତୁମ ପ୍ରତି ମୋର ଯେଉଁ ଆସକ୍ତି ତାହା ପ୍ରେମ ନୁହେଁ, ତାହା କେବଳ ସାମୟିକ ମୋହ । ମୋତେ କ୍ଷମା ଦେବାକୁ ହେବ ।" ଉତ୍ତରରେ ଏଲି କୁଆଡ଼େ କହିଲା, "ମୁଁ ମୋର ସମସ୍ତ ତୁମକୁ ଦେଇସାରିଛି, କର୍ମତଃ ମୁଁ ତୁମର ସ୍ତ୍ରୀ । ଅତଏବ ମୋତେ ଧର୍ମତଃ ଗ୍ରହଣ କରିବାକୁ ତୁମେ ବାଧ୍ୟ ।" ରଙ୍ଗୀନ ବାବୁ କହିଲେ, "ଅନ୍ତତଃ ମୋ ପକ୍ଷରୁ ମୁଁ ଏ ବାଧ୍ୟତାର କୌଣସି ଅର୍ଥ ଦେଖୁ ନାହିଁ । ଏହି ସର୍ବସ୍ୱ ସମର୍ପଣର ଦାବୀଟା କେବଳ ତୁମର ଏକୁଟିଆ ନୁହେଁ, ଶାନ୍ତ ମଧ୍ୟ ଏପରି ଦାବୀ କରିପାରେ, ଯଦି ବା ସେ ଏ ପର୍ଯ୍ୟନ୍ତ ସେ ଦାବୀର କଥା କହି ନାହିଁ , କେବଳ ବିକୃତ ମସ୍ତିଷ୍କ ତାର ଅନ୍ତରର ଆବେଦନ ଜଣାଇଛି । ତୁମ କଥାରୁ ମୋର ଅନ୍ତତଃ ଏହି ଧାରଣା ଜନ୍ମିଛି ଯେ, ଆଧୁନିକ ପ୍ରଗତିର ପକ୍ଷପାତୀ ତୁମର ବଳିଷ୍ଠ ଚରିତ୍ର ବଡ଼ ବେଶି ବିକ୍ଷେପ ଘଟିବ ନାହିଁ, ଯଦି ସାମୟିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ଯେଉଁ ସମର୍ପଣ କରିଥିଲି, ତାର ବିନିମୟରେ ମୋ ପକ୍ଷରୁ ପ୍ରତିଦାନ ଚିରନ୍ତନ ନ ହୋଇ କେବଳ ସାମୟିକ ହୁଏ । ଆଉ ଗୋଟିଏ କଥା, ସମର୍ପଣର ଦାବୀ ସମ୍ବନ୍ଧରେ ଯେଉଁ ଆଇନ ତୁମେ ଦେଖାଇଲ, ତୁମ ପକ୍ଷରୁ ସେ ଦାବୀ ଅବା

ମୋ ପକ୍ଷରୁ ସେ ଅଙ୍ଗୀକାର ସେତ୍ତ [ସମୟରେ ବ୍ୟକ୍ତହୋଇ ନ ଥିଲା ।" ଏଣ୍ଟି ପଚାରିଲା, "ହଉ, ମୁଁ ମାନି ନେଉଛି, ମୋ ପ୍ରତି ତୁମର ଯେ ଆସକ୍ତି, ତାହା ତୁମର ଦୋଷ ନୁହ; ତେବେ ତୁମେ କଣ ଶାନ୍ତିକୁ ପ୍ରେମ କରୁନ ? ଯେବେ ତାହାହିଁ ହେଲା, ତେବେ ତୁମକୁ ଖେଳିବାକୁ କଣ ଅନ୍ୟ ଜାଗା ମିଳିଲା ନାହିଁ ?" ରଙ୍ଗୀନ ବାବୁ ଉତ୍ତର ଦେଲେ, "ଶାନ୍ତିକୁ ମୁଁ ପ୍ରେମ କରୁଛି କି ନାହିଁ, ଜାଣେ ନାହିଁ। ତେବେ, ଯେତେବେଳେ ମୁଁ ଦୁଇ ଜଣଙ୍କୁ ବାଛିକରି ନ ପାରେ, ମୋର ମନ କହୁଛି, ଦୁର୍ବଳଟିକୁ ଗ୍ରହଣ କରିବାକୁ ଏବଂ ବଳିଷ୍ଠକୁ ଜଗତର ହିତ ସକାଶେ ଉତ୍ସର୍ଗ କରିବାକୁ ।" ଏ କଥା ଶୁଣି ଏଲିର ସର୍ବଶରୀର ଜଳି-ଗଲା, ମୁହଁରୁ ଆଉ କିଛି ବାହାରିଲା ନାହିଁ, କେବଳ ରୁଦ୍ଧଶ୍ୱାସ ସର୍ପ ପରି ଫଁ ଫଁ ହୋଇ କହିଲା "ଶୟତାନ !" ତା ପରେ ରଙ୍ଗୀନ୍ ବାବୁ କୁଆଡ଼େ ବରହମପୁର ଆସି କାଳବିଳମ୍ବ ନ କରି ଶାନ୍ତିକୁ ବାହାହେଲେ ।"

ହେମ ଆଉ କୁସୁମ ସବୁ ଶୁଣି ସାରି କହିଲେ, "ଏଲି ଯେ ପୁରୁଷଙ୍କ ମୁଣ୍ଡ ଘୂରେଇବାକୁ ଦୁହିଁବ, ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ? ଖାଇବାବେଳ ହେଲାଣି, ଚାଲ ତଳକୁ ଯିବା ।"

[ ତିନି ]

ପ୍ରାୟ ପାଞ୍ଚ ବରଷ ପରର କଥା । ଏଲି, କୁସୁମ ପ୍ରଭୃତିର ଜୀବନରେ ଅନେକ ଘଟଣା ଘଟିଯାଇଛି, ଅନେକ ପରିବର୍ତ୍ତନ ହୋଇଛି । କୁସୁମ ଇତିମଧ୍ୟରେ ବେଥୁନରୁ ବି, ଏ, ପାସକରି ପୂର୍ବ ନିରୂପଣ ଅନୁସାରେ ପ୍ରଭାତକୁ ବିଭା ହୋଇଛି । ପ୍ରଭାତ କଲିକତାରେ ସେଣ୍ଟପଲ୍ସ୍ ମିଶନ କଲେଜରେ ପ୍ରଫେସରି ଚାକିରି କରେ । ସ୍ତ୍ରୀ ପୁରୁଷ ପିଲାପିଲି ନେଇ ସାଧାରଣ ଗୃହସ୍ଥପରି ନିରୁଦ୍‌ବେଗରେ ଜୀବନ କଟାନ୍ତି । ଏଲି ଆଉ ହେମ ମଧ୍ୟ ବେଥୁନରୁ ପାସ୍ କରି ଗୋରଖପୁରରେ ମିଶନ ବାଳିକା ସ୍କୁଲରେ ଚାକିରି କରନ୍ତି । ଏମାନଙ୍କର ଛାତ୍ରାବସ୍ଥାର ବନ୍ଧୁତ୍ୱର କ୍ଷୀଣ ସ୍ମୃତି ପରସ୍ପର ମଧ୍ୟରେ ଭଣା

ଅଧିକେ ଜାଗରୂକ ରହିଛି କ୍ୱଚିତ୍ କଦାଚିତ୍ ଚିଠିପତ୍ରର ଆଦାନ ପ୍ରଦାନ ଦ୍ୱାରା ।

ଏଲି ବି. ଏ., ବି. ଟି. ପାସ କରି ପ୍ରଥମେ ମେଦିନୀପୁରର ମିଶନ ବାଳିକା ସ୍କୁଲରେ ବର୍ଷେ ଚାକିରୀ କରିଥିଲା । ପ୍ରଥମେ ମନେ କରିଥିଲା ଲେଡି ପ୍ରିନ୍‌ସିପାଲ୍‌ର ପ୍ରିୟପାତ୍ର ହୋଇଛି । ଚାକିରୀ କରିବାର କିଛିଦିନ ପରେ ପୁରୁଷଙ୍କ ସଙ୍ଗରେ ତାର ମିଶାମିଶିଟା ଯେ ଅତିରିକ୍ତ ରକମର ହେଉଛି, ଏ କଥା ଦିନେ ଲେଡି ପ୍ରିନ୍‌ସିପାଲ୍ ପ୍ରକାରାନ୍ତରେ ତାକୁ କହିଲେ । ଏ କଥା ଶୁଣି ସେ ଯେ କେବଳ ଅସନ୍ତୁଷ୍ଟ ହେଲା, ତାହା ନୁହେଁ, ଦୁଇ ଚାରି କଥା ମଧ ଶୁଣାଇଦେଲା । ଇତିମଧ୍ୟରେ ତାର ଉପରିସ୍ଥ ଶିକ୍ଷୟିତ୍ରୀର ସ୍ଥାନ ଖାଲି ହେଲା । ସେ ଦରଖାସ୍ତ କରିଥିଲା; କିନ୍ତୁ କର୍ତ୍ତୃପକ୍ଷ ଯେ କି ତାଠାରୁ ଅଧିକ ପୁରାତନ କର୍ମଚାରୀ ଏପରି ଜଣକୁ ସେ କାମ ଦେଲେ । ସେଥିରେ ସେ ରାଗ କରି ଚାକିରୀରେ ଇସ୍ତଫା ଦେଇ ଆସି କଲିକତାରେ ଏମ୍. ଏ. ପଢିଲା । ଏମ୍. ଏ, ପଢିବା ସମୟରେ ଦିନେ ସେ ପୁରୁଷ ଛାତ୍ରଙ୍କର Common Roomକୁ କଣ ପାଇଁ ଯାଇଥିଲା । ସେଠି ସେମାନେ ସମସାମୟିକ ଭାରତୀୟ ରାଜନୀତିର ଚର୍ଚ୍ଚା କରୁ କରୁ ଆସି ଗାନ୍ଧିଜୀଙ୍କର ନୂତନ ଆମଦାନୀ କରାହୋଇଥିବା ଶିଷ୍ୟା ମିସ୍ ସ୍ଲେଡ୍‌ଙ୍କର ନାମ ପରିବର୍ତ୍ତନ ପାଖରେ ପହଞ୍ଚିଥିଲେ । ଏଲିକୁ ଦେଖି ସେମାନେ କହିଲେ, "ମିସ୍ ଉଇଲ୍‌କିନ୍‌ସନ, ଆପଣ ଯଦି କିଛି ମନେ ନ କରନ୍ତି, ଗୋଟିଏ କଥା ଆପଣଙ୍କୁ କହନ୍ତୁ ।"

ଏଲି କହିଲା, "କଣ ?"

ସେମାନେ କହିଲେ, "ଆପଣ ବଙ୍ଗାଳୀ ଘରର ଝିଅ ହୋଇ ଏଭଳି ବିଦେଶୀ ନାମଟା କାହିଁକି ରଖିଛନ୍ତି ? ଦେଖନ୍ତୁ, ଯେଉଁ ବିଦେଶୀୟ ନାରୀମାନେ ଭାରତକୁ ଆସିଛନ୍ତି ଭାରତର ସେବା କରିବାକୁ, ସେମାନେ ପୁଣି ନିଜର ପୋଷାକପତ୍ର ପରିବର୍ତ୍ତନ କରିବା ସଙ୍ଗେ ସଙ୍ଗେ ନିଜର ନାମର ପରିବର୍ତ୍ତନ

କରୁଛନ୍ତି । ଉଦାହରଣ ସ୍ୱରୂପ ନୀଳ ନାଗିନୀ, ମିସ୍‌ବେନ୍ ଓ ନିବେଦିତା ପ୍ରଭୃତି ଦେଖନ୍ତୁ । ଆପଣ ନାମଟା ବଦଳାଉନ୍ତୁ ।"

ଏଲି ସେମାନଙ୍କର ପ୍ରଥମ କଥାର କ୍ଷୀଣ ପ୍ରତିବାଦ କରି କହିଲା ଯେ ସେ ବଙ୍ଗାଳୀ ନୁହେଁ । ଉତ୍ତରରେ ସେମାନେ କହିଲେ ସେ ବଙ୍ଗାଳୀ ନ ହେଲେ ସୁଦ୍ଧା ବଙ୍ଗାଳୀଙ୍କଠାରୁ କୌଣସି ଅଂଶରେ ଭିନ୍ନ ନୁହେଁ ।

ଏଲି ତା ପରେ ପଚାରିଲା, "ମୋ ନାମ ସକାଶେ କଣ ମୁଁ ଦାୟୀ, ନା ମୋ ନାମକରଣ ହେଲାବେଳେ ମୋତେ ପଚରା ହୋଇଥିଲା ?"

ସେମାନେ କହିଲେ, "ପିଲାଦିନରେ ଯଦିବା ଆପଣ ନିଜ ନାମ ସକାଶେ ଦାୟୀ ନ ଥିଲେ, ବର୍ତ୍ତମାନ ପ୍ରାପ୍ତବୟସ୍କ ହେବାରୁ ଏବଂ ନିଜର ନାମ ପରି-ବର୍ତ୍ତନ କରିବାକୁ ଆପଣଙ୍କର ଆଇନସଙ୍ଗତ କ୍ଷମତା ଥିବାରୁ, ଆପଣ ଯଦି ନ ବଦଳାନ୍ତି, ତାହାହେଲେ ଆପଣ ଯେ ନିଜର ନାମ ସକାଶେ ଦାୟୀ, ଏ କଥା ଧରି ନିଆଯିବ ।"

ଏଲି କହିଲା, "ବାଃ ! ସେକ୍‌ସପିଅର କହୁଛନ୍ତି ଗୋଲାପକୁ ଅନ୍ୟ ଯେ କୌଣସି ନାମ ଦେଇ, ଡ଼ାକ ତାହାର ଗୋଲାପତ୍ୱ ନଷ୍ଟ ହେବ ନାହିଁ । ନାମରେ କଣ ଅଛି ?"

ସେମାନେ ଉତ୍ତରରେ କହିଲେ, "ଆମ୍ଭେମାନେ ସ୍ୱୀକାର କରୁ, ଆପଣଙ୍କ ଗୋଲାପତ୍ୱର ସମ୍ମାନ ରକ୍ଷା କରିବାକୁ ତାକୁ ଗୋଲାପ ଡ଼ାକିବାଦ୍ୱାରା ।"

ସେଦିନ ଉପରଓଳି କଲେଜକୁ ଫେରି ଏଲି ଆଉ କୁଆଡେ ଗଲା ନାହିଁ । ଛାତ ଉପରେ ଯାଇ ଘଣ୍ଟାଏ ଖଣ୍ଡେ ବୁଲିଲା ଏବଂ ନିଜର ନାମକରଣ ଓ ତାହାର ପରିବର୍ତ୍ତନର ଆବଶ୍ୟକତା ସମ୍ବନ୍ଧରେ ଭାବିଲା । ଠିକ୍ କଲା, ନାମ ପରିବର୍ତ୍ତନରେ ତାର ଯଥେଷ୍ଟ ସୁବିଧା ଅଛି, ଅନ୍ତତଃ ଅକାରଣ କୈଫିୟତ୍ ଦେବା ପ୍ରଭୃତି ଅନେକ ଅସୁବିଧାରୁ ସେ ରକ୍ଷା ପାଇବ । ଅନେକ ଭାବି ଚିନ୍ତି ସ୍ଥିର କଲା, ନିଜର ନାମକୁ ଏପରି କୌଶଳରେ ପରିବର୍ତ୍ତନ କରିବ, ଯେପରି ନୂତନ ନାମର ପୁରାତନ ସହିତ କିଛି ସାଦୃଶ୍ୟ ଥିବ । ଯେତେବେଳେ ନିଜେ

## ଇଲ୍‌ଦେବୀ

ଲୁବ ଚନ୍ଦ୍ର ନାମଟା ନେବ, ଅନ୍ତତଃ ତା' ଯେପରି ଶୁଣିବାକୁ ସୁନ୍ଦର ହେବ, କବିତ୍ୱର ଅଭାବ ଯେପରି ସେଥିରେ ନ ଥିବ । ସ୍ଥିର କଲି,ଅନ୍ତତଃ ନାମଟା ଦୁଇ ତିନି ଅକ୍ଷରରୁ ବେଶି ଯେପରି ନ ହୁଏ; ନଇତ ନାମ ଭିତରେ ଅର୍ଥ ରହୁ ନ ରହୁ, ଅର୍ଥ ରହିବ ନାହିଁ । ଅତଏବ ପ୍ରଭ୍ରସନନ୍ଦିନୀ, ପ୍ରଦୋଷକାମିନୀ ବଦୂ୍ୟତ୍-ଦାରଣୀ ପ୍ରଭୃତି ପାଖିହାତିଆ ନାଁ ସବୁ ସ୍ମରଣରେ ଆସିବା ମାତ୍ର ବିଦାୟ ଦେଲି । ନିର୍ମଳା, ପ୍ରମୀଳା, ସରଳା,ଊର୍ମିଳା ପ୍ରଭୃତି ନାମ ଯଦିବା ଚଳନ ସହି, ତଥାପି ସେତେ ଆଧୁନିକ ନୁହେଁ । ଭାବିଲି, ଦୁଇ ଅକ୍ଷରିଆ ବୋଲି ଆଉ ହାସି, ଲୀଳା, ମୋତି, ପେଗି ପ୍ରଭୃତି ନାମ ତ ନେଇପାରିବ ନାହିଁ । ତଳକୁ ଆସି ବଡ଼ି କାଳି ବଙ୍ଗଳା ଅଭିଧାନ ଫିଟାଇ ଘଣ୍ଟାଖଣ୍ଡେ ପତ୍ର ଓଲଟାଇ ଗଲି । ଶେଷକୁ ବିରକ୍ତ ହୋଇ ଅଭିଧାନ ବନ୍ଦକରି ଯାଇ ଖଟରେ ଶୋଇଲି । ଶେଷକୁ ନାମକରଣରେ ନୂତନତ୍ୱ ଉଦ୍ଭାବନର ଆଶା ନ ଦେଖି ଆଶ୍ରା ନେବାକୁ ବସିଥିଲି ଅନ୍ୟର ନାମ ଅନୁକରଣ କରିବାରେ । ଖଟରେ ପଡି ଭାବୁଛି,ଏହିପରି ସମୟରେ ଅତି ଅନପେକ୍ଷିତ ଭାବରେ ନିଜର ନୂଆ ନାମର ସନ୍ଧାନ ପାଇଲି ନିକଟବର୍ତ୍ତୀ ମସ୍‌ଜିଦ୍‌ରୁ । ନମାଜର ସମୟ ହୋଇଥିବାରୁ ଏବଂ ରମଜାନ ମାସ ଥିବାରୁ ସେହି ସମୟରେ ମୁଏଜିନ୍ ମସ୍‌ଜିଦ୍‌ର ଗୁମ୍ବଜ ଉପରକୁ ଯାଇ ଭକ୍ତକୁ ପ୍ରାର୍ଥନା କରିବାକୁ ଉଚ୍ଚୈସ୍ୱରରେ ଆହ୍ୱାନ କଲି—ଇଲାହା ଇଲାହା × × । ଏଣି କାନରେ ଏହି ଆହ୍ୱାନର ପ୍ରଥମ ଅଂଶ ବାଜିବାମାତ୍ର ମନ ସେଇଟି ଅଟକି ଗଲି ଏବଂ ନିଜ ନାମକୁ ଏପରି ଅପ୍ରତ୍ୟାଶିତ ଭାବରେ ପାଇବାରୁ ଚଞ୍ଚଳ ଉଠିଯାଇ ଫାଉଣ୍ଟେନ ପେନ ସାହାଯ୍ୟରେ ନିଜ ପଢିବା ପୁସ୍ତକମାନଙ୍କ ଉପରେ ଲେଖିଗଲି 'ଇଲ୍' 'ଇଲ୍' 'ଇଲ୍' ।

ନାମଟା ତ ଯଥାତଥା ମନମୁତାବକ ମିଳିଗଲି । ଦୈବଦୁର୍ବିପାକରୁ ଯେପରି ପ୍ରଥମ ନାମଟା କଟମଟିଆ ହୋଇଥିଲି, ଭାବିଲି, ସେହିପରି ଦୈବାତ୍ ନୂଆ ନାମଟା ବି ମିଳିଲି; କିନ୍ତୁ ବିପଦ ତଥାପି କଟିଲି ନାହିଁ । ପଦବୀ ନେଇ ପୁଣି ଗୋଳମାଳରେ ପଡିଲି । ଏକ୍ସଶା ଉଇଲ୍‌କିନ୍‌ସନ୍ ଯାହା, ଇଲ୍ ଉଇଲ୍‌କିନ୍‌ସନ୍ ତାହା । ଏପରି ପରିବର୍ତ୍ତନ କେବଳ ମହରଗରୁ ଯାଇ କାଣ୍ଡାରରେ ପଡିବା

କଥା ! ପଦବୀକୁ ଦାସ ଫାସ କିଛି ଗୋଟାଏ କରିଦେବାକୁ ସେ ପ୍ରଲୁବ୍ଧ ହୋଇ ନ ଥିଲା, ତାହା ନୁହେଁ; କେବଳ ଲୋକେ ହସିବେ, ଆଉ ସଙ୍ଗୀମାନେ କାଲେ ବାପ ମା ବଦଳେଇବାକୁ ଟାହୁଲି କରିବେ, ଏହି ଭୟରେ ସେ ଚେଷ୍ଟାରୁ କ୍ଷାନ୍ତ ହେଲା । ତା ପରେ ମନେ ପଡ଼ିଲା, ହିନ୍ଦୁଘରର ଝିଅ, କରଣ ହେଉ ବାହ୍ମଣ ହେଉ, ବାଲୁହେଲେ ଦାସୀ ପଦବୀ ଏବଂ ଅବିବାହିତା ଅବସ୍ଥାରେ ଦେଈ୍ ପଦବୀ ନଅନ୍ତି ।

କିନ୍ତୁ ଓଡ଼ିଶାର 'ଦେଈ୍' ପଦବୀଟାରେ ଅନ୍ତତଃ ତା ଦୃଷ୍ଟିରେ କିଛି କବିତ୍ୱ ଥିଲା ପରି ଜଣାଗଲା ନାହିଁ । ଶେଷକୁ ହିନ୍ଦୁ ବଙ୍ଗାଳୀ ଘରର ଝିଅଙ୍କ ପରି ଦେବୀ ପଦବୀ ଗ୍ରହଣ କରିବାକୁ ସ୍ଥିରକଲା, ଯେହେତୁ ତାର ଶିକ୍ଷାଦୀକ୍ଷା ଚଳ-ଚଳନ ଖାଇବା ପିନ୍ଧିବାରେ ଅନ୍ତତଃ କଲିକତାସ୍ଥିତ ଅନ୍ୟ କୌଣସି ମଧ୍ୟବିତ୍ତ ବଙ୍ଗାଳୀ ଘରର ଝିଅଙ୍କଠୁଁ ସେ ସେ ଊଣା ନୁହେଁ, ଏହି ଚିନ୍ତା ବଙ୍ଗଳା 'ଦେବୀ' ପଦବୀ ନେବାରେ ତାର ଯେ ଅଧିକାର ଅଛି, ସେ ବିଷୟରେ ତାକୁ ଯଥେଷ୍ଟ ସାହାଯ୍ୟ କରିଥିଲା । ଏହିପରି ଏଲିଶା ଉଇଲ୍‌କିନ୍‌ସନ୍ ପରିବର୍ତ୍ତିତ ହେଲା 'ଇଲା ଦେବୀ'ରେ ।

ବାପମାକୁ ପତ୍ରଦ୍ୱାରା ଜଣାଇଦେଲା ଯେ, ସେ ଆଇନର ସାହାଯ୍ୟ ନେଇ ତାର ନୂଆ ନାମ, ଅର୍ଥାତ୍ 'ଇଲା ଦେବୀ'କୁ ଚିରକାଳପାଇଁ ଗ୍ରହଣ କରିଛି ଏବଂ ତାର ଏ ପ୍ରକାର ନାମ ପରିବର୍ତ୍ତନରେ ସେମାନେ ଯେପରି ମନେ ନ କରନ୍ତି ଯେ, ସେ ତାର ପିତାମାତାର ନିର୍ବାଚନ ପ୍ରତି ତାଚ୍ଛିଲ୍ୟ ଦେଖାଉଛି; ବରଂ ସେମାନେ ଯେପରି ବୁଝନ୍ତି, ତାର ଦେଶାତ୍ମବୋଧ ତାକୁ ଏ ପ୍ରକାର କରାଇଛି ।

## [ ଘୁଇ ]

ଇଲା ଓରଫେ ଏଲି ଯଦିବା ମେଦିନୀପୁରରେ ବର୍ଷେ ଉପରେ ସ୍କୁଲକରି କରିଥିଲା, ତଥାପି ନିକଟବର୍ତ୍ତୀ କଲିକତା ସହରରେ କୁସୁମ ଘରକୁ ଯାଇ

କେବେ କୁସୁମ ସହିତ ଦେଖାସାକ୍ଷାତ କରି ନ ଥିଲା । ଅବଶ୍ୟ କଲିକତାକୁ ଯାଇଥିବା ସମୟରେ ପାର୍ଟିପାର୍ଟି ଅବା ଗୀର୍ଜାରେ ଯେ କୁସୁମ ସହିତ ଅକସ୍ମାତ୍ ସାକ୍ଷାତ ହୋଇ ନ ଥିଲା, ତାହା ନୁହେଁ ; କିନ୍ତୁ ଏପରି ଆକସ୍ମିକ ଦେଖାସାକ୍ଷାତ ସମୟରେ କଥାବାର୍ତ୍ତାରେ କୁସୁମ ପକ୍ଷରୁ ସେପରି ସହୃଦୟତା ବା ଆଗ୍ରହ ପ୍ରକାଶ ପାଉ ନ ଥିବାରୁ କୁସୁମର ଘରକୁ ଯାଇ ତାର ସ୍ୱାମୀ ପ୍ରଭାତ ସହିତ ଯାଚି କରି ଭାବ ଆଳାପ କରିବାକୁ ଏଲିର ମନ ବଳୁ ନ ଥିଲା । କିନ୍ତୁ ଯେତେବେଳେ ଭାବୁଥିଲା, ସ୍କୁଲରେ ଶିକ୍ଷକତା କରିବ କି ନାହିଁ, ମନେକଲା, ଥରେ କୁସୁମର ସ୍ୱାମୀ ପ୍ରଭାତ ସହିତ ପରାମର୍ଶ କଲେ ଭଲ ହୁଅନ୍ତା । ଭାବିଲା, ସେ ବି ତ ଶିକ୍ଷା ବିଭାଗରେ କାର୍ଯ୍ୟକରେ; ଅନ୍ତତଃ ତାର ପରାମର୍ଶ ନେବାଟା ମନ୍ଦ ହେବ ନାହିଁ । ଅତଏବ କଲିକତାକୁ ଆସିଥିବା ସମୟରେ ଦିନେ ସଞ୍ଜବେଳେ ଆସି ପହଞ୍ଚିଲା ପ୍ରଭାତର ବସିବା ଘରେ । କୁସୁମ ଅବଶ୍ୟ ତାକୁ ଆଦରର ସହିତ ବସାଇଲା; କିନ୍ତୁ ମନେ ମନେ ଭାବିଲା, ଏ ବିପଦ ତ ଏ ପର୍ଯ୍ୟନ୍ତ ମୋ ଘରେ ପାଦ ପକାଇ ନ ଥିଲା, ଆଜି କୋଉ ମତଲବରେ ଏ ଆଡ଼କୁ ମୁହାଁଇଲା ? ବାଜେ କଥାବାର୍ତ୍ତା ପରେ ଏଲି କହିଲା, "କୁସୁମ, ପ୍ରଭାତବାବୁ ଘରେ ଅଛନ୍ତି ନା ? ମୁଁ ଟିକେ ତାଙ୍କ ସଙ୍ଗରେ ପରାମର୍ଶ କରିବାକୁ ଆସିଛି । ତୁ ମୋତେ ତାଙ୍କ ପାଖରେ introduce କରିଦେ ।"

କୁସୁମ କଣ କରିବ, ଅଗତ୍ୟା ଭଦ୍ରତା ଖାତିରରେ ଉଠିଯାଇ ଭିତରୁ ସ୍ୱାମୀକୁ ଡାକି ଆଣିଲା ଏବଂ ଏଲିର ତାଙ୍କ ସହିତ ପରିଚୟ କରାଇଦେଲା ।

ପ୍ରଭାତ କହିଲା, "ବାଃ, ଆପଣ କୁସୁମର ବନ୍ଧୁ, କଲିକତାର ଏତେ ନିକଟରେ ଅଛନ୍ତି, କାହିଁ ଏ କଥା ତ ମୁଁ ଏତେ ଦିନଯାକେ ଜାଣି ନାହିଁ ?"

ଏଲି—ସେ କୈଫିୟତ ମୁଁ ଦେବି, ନା କୁସୁମ ଦେବ ?

କୁସୁମ—ମୋର ଜଞ୍ଜାଳ କେତେ, ପିଲାପିଲି ଘର, ମୋତେ ମରିବାକୁ ଫୁରସତ ନାହିଁ । ଆଉ, ତୁ ମୁକୁଳିସ୍ ଲୋକ, ତୋର କୋଉ କାମ ଯେ, ଥରେ ଆସି କୁସୁମ କେମିତି ଅଛି, ଦେଖିଯିବାକୁ ତୋତେ ବେଳ ହେଲା ନାହିଁ ?

# ସାମୟିକ

ଏଲି—କାହିଁକି, ତୁ କଣ ଜାଣି ନ ଥିଲୁ କି, ମୁଁ ମେଦିନୀପୁରରେ ଅଛି ? କଲିକତାରେ ବି ତ ମତେ କେତେ ଥର ଦେଖିଛୁ ? ସମୟ ନ ଥିଲା ତ ଥରେ ଚିଠି ଲେଖି ନିମନ୍ତ୍ରଣ କରିପାରିଲୁ ନାହିଁ ତୋ' ଘରକୁ ?

କୁସୁମ—ଷ୍ଟେଶନରେ ଯେ ଆସି ପହଞ୍ଚିଛି ଏ କଥା ନିମନ୍ତ୍ରଣ ପାଇବା ପୂର୍ବରୁ ଥରେ Formal visit ଦ୍ୱାରା ଅତିଥିର ଜଣାଇବା ଉଚିତ । ତା' ନ ହେଲେ ନିମନ୍ତ୍ରଣକାରୀ କେମିତି ଜାଣିବ, ତାର ନିମନ୍ତ୍ରଣ ସମ୍ମାନିତ ହେବ ?

କଥାକୁ ଆଉ ବଢିବାକୁ ନ ଦେଇ ପ୍ରଭାତ କହିଲା, "ଗତସ୍ୟ ଶୋଚନା ନାସ୍ତି ! ନାହିଁ ମାମୁଁଠୁଁ କଣାମାମୁଁ ଭଲ । ବର୍ତ୍ତମାନ ବନ୍ଧୁ ମିଳନରେ ଆନନ୍ଦକୁ ବାଦ ଦେଇ ଅତୀତରେ ଯେ ବେଗାଫିଲ୍ ଘଟି ଯାଇଛି, ତାକୁ ବସି ମାଜିବା ବୁଦ୍ଧିମାନର କାର୍ଯ୍ୟ ନୁହେଁ ।"

ତା ପରେ ସେ କାହିଁକି ଚାକିରୀ ଛାଡିବାକୁ ମନଃସ୍ଥ କରିଛି, ସେ କଥା ଏଲି ବିଶଦ ଭାବରେ କହିବାକୁ ଲାଗିଲା । ପ୍ରଭାତ ଯେ ତା କଥାକୁ କେବଳ ଚୁପ କରି ଶୁଣୁଥିଲା, ତା ନୁହେଁ; ତାର ଅତ୍ୟଧିକ ଆଧୁନିକ ଧରଣର ବେଶଭୂଷା ଏବଂ କଥା କହିବାର ଭଙ୍ଗୀ ଉପରେ ମଧ୍ୟ ଲକ୍ଷ୍ୟ ରଖିଥିଲା । ଅବଶ୍ୟ ତାର ଚାକିରୀ ଛାଡିବାର ପ୍ରସ୍ତାବକୁ ପ୍ରଭାତ ଆଦୌ ସମର୍ଥନ କଲା ନାହିଁ; କିନ୍ତୁ ଯେତେବେଳେ ଏଲି କହିଲା ଯେ, ସେ ଏକରକମ ସ୍ଥିର କରିଛି, ଏ ଚାକିରୀ ଛାଡିଦେବ, ପ୍ରଭାତ ଉତ୍ତର ଦେଲା, 'ଆପଣ ଯଦି ସ୍ଥିର କରିଛନ୍ତି, ତେବେ ମୋର ପରାମର୍ଶ ମାଗିବା ନିଷ୍ପ୍ରୟୋଜନ ।"

ଏଲି କହିଲା, "ମୁଁ ବିଶେଷ କରି ଆପଣଙ୍କର ସାହାଯ୍ୟ ଭିକ୍ଷା କରିବାକୁ ଆସିଛି । ମୁଁ ଆସୁଛି କଲିକତାକୁ ଏମ୍. ଏ. ପଢିବାକୁ । ବାବାଙ୍କୁ ଆଉ ଖର୍ଚ୍ଚାନ୍ତ କରିବାକୁ ଇଚ୍ଛା ନାହିଁ । ମୁଁ ଚାକିରୀ କରି ଯାହା ରୋଜଗାର କରିଛି, ସେଥିରେ ଏମ୍. ଏ. ଦୁଇ ବର୍ଷର ଖରଚ ଚଳାଇନେବ । କିନ୍ତୁ ତା ଏତେ ବେଶୀ ନୁହେଁ ଯେ, ଏମ୍. ଏ. ପାଇଁ ଯେତେ ବହି ଦରକାର, ସେ

ସବୁ କରି ପାରିବ । ଅତଏବ ଆପଣଙ୍କୁ ଋକ୍ୱେଷ୍ଟ କରିବାକୁ ଆସିଛି, ଆପଣଙ୍କର କଲେଜ ଲାଇବ୍ରେରୀରୁ ମୋତେ ସମୟକୁ ସମୟ କିଛି କିଛି ବହି ଯୋଗାଇବେ ।” ପ୍ରଭାତ ସ୍ୱୀକୃତ ହେଲା ଏବଂ ସାମାନ୍ୟ ଜଳଯୋଗ ପରେ ଏଲି ବିଦାୟ ନେଲା।

ଏହିପରି ପ୍ରଭାତ ସହିତ ଏଲିର ଆଳାପ ପରିଚୟ କୁହ ବା ବନ୍ଧୁତ୍ୱ କୁହ, ଅନ୍ତତଃ ମିଳାମିଶାର ସୂତ୍ରପାତ ହେଲା । ଏଲି ସମ୍ବନ୍ଧରେ କୁସୁମ ଯେ ନିଜର ମତାମତ ସ୍ୱାମୀ ନିକଟରେ ବ୍ୟକ୍ତ କରି ନ ଥିଲା, ତାହା ନୁହେଁ; ବରଂ ଯେଉଁ ଦିନ ପ୍ରଥମ କରି ଏଲି ସେମାନଙ୍କର ଘରକୁ ଆସିଥିଲା, ସେହି ଦିନ, ଏଲି ଯେ ଗୋଟିଏ ଏକ ନମ୍ବର flirt, ଏ କଥା ଠିକ୍ ତା ସିବା ପରେ ସ୍ୱାମୀକୁ ଜଣାଇ ଦେଇଥିଲା ଏବଂ ତା ସହିତ ଯେପରି ବେଶି ମିଳାମିଶା ପ୍ରଭାତ ନ କରେ, ସେ ବିଷୟରେ ସାବଧାନ କରିଦେଇଥିଲା । କିନ୍ତୁ ଏ ସତର୍କର ଫଳ ହେଲା ଓଲଟା । କେବଳ ସତର୍କ କରିଦେବାରୁ ଯେ ଅନୁସନ୍ଧାନ କରିବା ଇଚ୍ଛା ପ୍ରବଳ ହେଲା, ତାହା ନୁହେଁ; ଏ ଇଚ୍ଛାର ମୂଳରେ ଥିଲା ପ୍ରଭାତର ମାନସିକ ଅବସ୍ଥା, ଯାହା ତାର ବିବାହିତ ଜୀବନର ଅବଶ୍ୟମ୍ଭାବୀ ଫଳ । ସେ ଯେତେ ଦିନ ପର୍ଯ୍ୟନ୍ତ ବିବାହ କରି ନ ଥିଲା, ସେତେ ଦିନ ପର୍ଯ୍ୟନ୍ତ ସ୍ତ୍ରୀ-ଜାତି ସହିତ ଘନିଷ୍ଠଭାବରେ ପରିଚିତ ହେବା ତାହା ନିକଟରେ ପ୍ରଲୋଭନର ବିଷୟ ମଧ୍ୟ ନ ଥିଲା । ସେତେବେଳେ ସ୍ତ୍ରୀଚରିତ୍ର ତା ନିକଟରେ ଗୋଟାଏ କୁହେଳିକାମୟ ରହସ୍ୟ । କିନ୍ତୁ ବିବାହ କରି ସେ ହେଲା ମଣିଷଖିଆ ବାଘ, ଅର୍ଥାତ୍ ଆସ୍ୱାଦନରେ ବାଘର ମଣିଷଭୋକ ଜମିଲା । ତଫାତ୍ ଏତିକି ଯେ, ଶିକାର ସନ୍ଧାନରେ ସେ ବଣଜଙ୍ଗଲ ଗାଁଗଣ୍ଡା ବୁଲୁ ନ ଥିଲା । କିନ୍ତୁ ଶିକାର ହାତକୁ ପଡିଲେ ଅବା ଆପେ ଆସି ଧରାଦେଲେ ଯେ ତାକୁ ଛାଡିଦେବ, ସେ ବଦାନ୍ୟତା ପ୍ରଭାତର ଲୋପ ପାଇଥିଲା ।

ଏଲି ସହିତ ପରିଚୟ ହେବା ପରେ ସେ ଯେତେବେଳେ କଲିକତାକୁ ଆସି ହଷ୍ଟେଲରେ ରହିଲା ଏମ୍ ଏ. ପଢିବାକୁ, ପ୍ରଭାତ ବହିପତ୍ର ନେଇ ଏଲିକୁ ତା ହଷ୍ଟେଲରେ ନିଜେ ଯାଇ ଦେଇଆସେ ।

# ସାମୟିକ

ଏଣୁପର କ୍ରମେ ଏଲ ସହିତ ପ୍ରଭାତର ଘନିଷ୍ଠତା ବଢିଲା, ଯେଉଁ ହେତୁରୁ ପ୍ରଭାତ ଉପରେ ଫରମାସ ଜାହିର କରିବାକୁ ଏଲର ଅଧିକାର ମଧ୍ୟ ସହଜ ହୋଇ ଆସିଲା, ଅର୍ଥାତ୍ ଅପରିଚିତ ଅବା ଅଳ୍ପପରିଚିତ ନିକଟରୁ ଯାଚିତ ବା ଅଯାଚିତ ଭାବରେ କୌଣସି ବିଷୟ ଗ୍ରହଣ କରି ବାଧିତ ହେବା ସକାଶେ ଲୋକ ଯେଉଁ କୁଣ୍ଠା ଅନୁଭବ କରେ, ଏଲର ପ୍ରଭାତ ନିକଟରେ ସେ କୁଣ୍ଠାର ମାତ୍ରା ଊଣା ପଡିଲା । ଏଣିକି ପ୍ରଭାତ କୌଣସି କୌଣସି ସନ୍ଧ୍ୟାରେ ଫିଟନ୍ କମ୍ବା ଟାକ୍ସିରେ ଏଲ ସହିତ ଆଉଟିଂରେ ଯିବାକୁ ଲାଗିଲା । କେତେ-ବେଳେ ସେମାନେ ଫରପୋର ଟିଫିନ୍ ରୁମ୍‌ରେ ରସନାର ତୃପ୍ତି ସାଧନ କରି ଚିତ୍ତବିନୋଦନ ନିମନ୍ତେ ଯାଆନ୍ତି ଏଲ୍‌ଫିନ୍‌ଷ୍ଟୋନ୍ ଅବା ମେଟ୍ରୋକୁ, କେତେ-ବେଳେ ଅବା ହ୍ୱାଇଟିଆଉଏରେ ଟିଫିନ୍ ସାରି ସନ୍ଧ୍ୟାର ପ୍ରାୟାନ୍ଧକାରରେ ପରସ୍ପରର ବାହୁଲଗ୍ନ ହୋଇ ବୁଲନ୍ତି ଇଡେନ୍ ଗାର୍ଡେନରେ—ଅବଶ୍ୟ ଯେଉଁ ଅଢ଼େ ବୃକ୍ଷଲତା ଘନପଲ୍ଲବିତ ଏବଂ ଅନ୍ୟାନ୍ୟ ବାୟୁସେବୀଙ୍କର ପାଦସ୍ପର୍ଶ ବିରଳ । ଏମାନଙ୍କର ମତ, ନାରୀକୁ ବାହୁର ଆଶ୍ରୟ ନିବେଦନ କରିବା ପୁରୁଷ ପକ୍ଷରେ ଭଦ୍ରତାର ଶ୍ରେଷ୍ଠ ନିଦର୍ଶନ ।

ପ୍ରୀତିର ଭିତ୍ତି ହେଉଛି ଆଦାନ ପ୍ରଦାନ । ପରକୀୟା ହେଲେ ତ କଥା ନାହିଁ । ପ୍ରଦାନ ଯେତେ ବେଶି ହୁଏ, ଆଦାୟର ପଥ ସେତେ ସୁଗମ ହୁଏ, ଅନ୍ତତଃ ପୁରୁଷ ନିମନ୍ତେ ।

ପ୍ରଭାତର ଏଲକୁ ଦେବାର ଅଂଶଟା ବାୟସ୍କୋପ, ଟିଫିନ୍ ଏବଂ ଆଉଟିଂର ଖର୍ଚ୍ଚର ସୀମା ଛାଡି ଉପରକୁ ଉଠି ନ ଥିଲା । ପ୍ରଭାତ ତ ଆଉ ସଂସାର ଅନଭିଜ୍ଞ କଲ୍ପନାବିଳାସୀ ନବଯୁବକ ନୁହେଁ ଯେ, ବେପରୁଆ ସର୍ବସ୍ୱାନ୍ତ ହୋଇ ମୂଲ୍ୟର ଅତିରିକ୍ତ ଦେବ, ଅନ୍ତତଃ ଅପର ପକ୍ଷରୁ ପୀଡ଼ନ ନ ପାଇ ଆପଣା ଛାଁକୁ । ଅତଏବ ଗହଣା ପତର ଅବା ସ୍ତ୍ରୀଲୋକର ବ୍ୟବହାରଯୋଗ୍ୟ କୌଣସି ସୌଖୀନ ଜିନିଷ ଏଲକୁ ଉପହାର ଦେବା ଏଯାବତ୍ ଆବଶ୍ୟକ ବୋଧ କରି ନ ଥିଲା । ଭାବିଲା, ଏତିକରେ ଯଦି କାମ ହାସଲ ହୁଏ, ଅକାରଣେ

ବେଶି ଖରଚ କରିବ କାହିଁକି ? କିନ୍ତୁ ଅନ୍ତରଙ୍ଗତା ବଢ଼ିବା ସାଙ୍ଗେ ସାଙ୍ଗେ ପ୍ରଭୃତର ଏ ଆଡ଼ର ଖରଚଟା ବେଶି ଧନ ମୂଲକ ରହିଲା ନାହିଁ । ଯେଉଁଠି ପ୍ରୀତି ପରକୀୟା, ଅର୍ଥାତ୍ ପ୍ରୀତିର ପାତ୍ର ସ୍ୱକୀୟ ହେବାର କୌଣସି ସମ୍ଭାବନା ନ ଥାଏ, ସେଠି ଦେବାର ଚିନ୍ତା ଅପେକ୍ଷା ନେବାର ଚିନ୍ତାଟା ବେଶି କରି ଉଭୟ ପକ୍ଷକୁ ଆକ୍ରମଣ କରେ । ତାହାର କାରଣ ହେଉଛି, ଅବସ୍ଥା ନିତାନ୍ତ ଅନିଶ୍ଚିତ, ଅତି ସାମାନ୍ୟ ଘଟନାରେ ଉଭୟର ମଧ୍ୟବର୍ତ୍ତୀ ଯୋଗସୂତ୍ର ଛିନ୍ନ ହେବା ବିଚିତ୍ର ନୁହେଁ । ଅତଏବ ସେତେବେଳର ପ୍ରବୃତ୍ତି ହେଉଛି ଖସି ଥାଉଁ ଥାଉଁ ନଡ଼ା ଶୁଖାଇବାର ବ୍ୟବସ୍ଥା କରିବା । ସେଥିପାଇଁ ଏଲିର ଫରମାସ ଯେ କେବଳ ଆଉଟିଂ ଅବା ବାୟସ୍କୋପ ପ୍ରଭୃତିରେ ଅଧିକ ଧନ ଆବଦ୍ଧ ରହିଲା ନାହିଁ, ସେଥିରେ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନାହିଁ । ଅଳ୍ପଦାମର ବ୍ରୋଚ,ସେଫ୍‌ଟିପିନ୍‌ରୁ ଆରମ୍ଭ କରି ଏସେନ୍ସ,ଏସେନ୍ସସ୍ପ୍ରେୟର, କଟକର ତାରକସି କାମକରା ଗୋଲ୍ଡପଉଡ଼ର, ଅତରଦାନ୍ ପ୍ରଭୃତି ଉପହାର ଏଲିର ହସ୍ତଗତ ହେବାକୁ ଆରମ୍ଭ କଲା । ଏ କଥା ମନେ ରଖିବାକୁ ହେବ ଯେ, ଏ ସବୁ ଫରମାସ କରିବାର କାୟଦା ଦୁରସ୍ତ ଥିବାରୁ ନେବାର ହୀନତାକୁ ପ୍ରଭୃତକୁ ବାଧ ହୋଇ ଦେବାର ଭଦ୍ରତାରେ ଢାଙ୍କି ରଖିବାକୁ ପଡୁଥିଲା । ଦେବାର ଗରଜଟା ଯେମିତି ପ୍ରଭୃତର ବେଶି ।

ଏଲି ଦୁଇ ବର୍ଷ ପରେ ଏମ୍. ଏ. ପାସ୍ କରି ସଙ୍ଗେ ସଙ୍ଗେ ଭବାନୀପୁରର କୌଣସି ବାଳିକା ସ୍କୁଲରେ ମାସିକ ଏକଶ ଟଙ୍କା ବେତନରେ ପ୍ରଧାନ ଶିକ୍ଷୟିତ୍ରୀର କାର୍ଯ୍ୟ ଗ୍ରହଣ କଲା । ସ୍କୁଲଟି ଯଦିବା ଛୋଟ, ତଥାପି ସେଥିରେ ପିଲାମାନଙ୍କ ରହିବା ସକାଶେ ଗୋଟିଏ ଛାତ୍ରାବାସ ଥିଲା ଏବଂ ସେମାନଙ୍କ ସଙ୍ଗରେ ପ୍ରଧାନ ଶିକ୍ଷୟିତ୍ରୀ ଯେପରି ରହିପାରିବେ, ତାହାର ମଧ୍ୟ ବନ୍ଦୋବସ୍ତ ଥିଲା । କିନ୍ତୁ କାର୍ଯ୍ୟ ଗ୍ରହଣ କରିବା ସମୟରେ ସ୍କୁଲ କମିଟିକୁ ଏଲି ଜଣାଇ ଦେଲା ଯେ, ସେ ଛାତ୍ରାବାସରେ ରହିପାରିବ ନାହିଁ ;କାରଣ ଅନେକ ସମୟରେ ତା ଘରୁ ପୁରୁଷ ଲୋକ କଲିକତା ଆସିବେ ଏବଂ ସେମାନେ ସ୍କୁଲର ନିୟମ

ଅନୁସାରେ ତା ସହିତ ରହିପାରିବେ ନାହିଁ । ସେଥିପାଇଁ ସେ ଭବାନୀପୁରରେ ଗୋଟାଏ ଫ୍ଲାଟ ( Flat ) ଭଡ଼ା ନେଲା । ଅସଲ ଉଦ୍ଦେଶ୍ୟ ହେଉଛି, ଯେପରି ନିଜର ଚଳାଚଳର ସ୍ୱାଧୀନତା କୌଣସିରୂପେ ବାଧା ନ ପାଏ ବା ସ୍କୁଲ ଅଧ୍ୟକ୍ଷଙ୍କ ନଜରରେ ସିଧା ନ ପଡ଼େ । ଅତଏବ ଏଲି କାର୍ଯ୍ୟ କଲା ଦିନରୁ ପ୍ରଭାତ ଭବାନୀପୁର ଆଡ଼କୁ ବୁଲିଆସିଲେ ଏଲିର ଫ୍ଲାଟରେ ଘରର ସୁଖ-ସୁବିଧା ଭୋଗକରେ ।

ଦିନେ ବିଳାସୀ ସମାଜ କର୍ତ୍ତୃଙ୍କ ଆଦୃତ କୌଣସି ଏକ ହୋଟେଲରେ ଗ୍ରହିରେ ଭୋଜନ ସାରି ଟାକ୍ସି ଯୋଗେ ଦୁହେଁ ଆସି ପହଞ୍ଚିଲେ ଏଲିର ଫ୍ଲାଟରେ । ବସିବା କାମରାରେ ଦୁହେଁ କିଛିକ୍ଷଣ ବସିବା ପରେ ମୁଖରୋଚକ କବାବ କାଟଲେଟ୍ ପ୍ରଭୃତିର ଅତ୍ୟଧିକ ସଦ୍‌ବ୍ୟବହାର ହେତୁରୁ ଦେହରେ ଯେଉଁ ଅଳସତାର ପ୍ରତିକ୍ରିୟା ଆରମ୍ଭ ହୋଇଥିଲା, ତାରି ପ୍ରେରଣାରେ ହେଉ, ଅବା ଅନ୍ୟ କୌଣସି କାରଣରୁ ଅବା ବିନା କାରଣରୁ ହେଉ, ଉଭୟଙ୍କର ଖୁବ ଗପ ସେଦିନ ଅମଡ଼ା ବାଟରେ ଚାଲିବାକୁ ଲାଗିଲା । ଏଲି କହିଲା, "ପ୍ରଭାତ ବାବୁ, କୁସୁମ ମୋର ସହପାଠୀ ନ ହେଲେ ମଧ୍ୟ ଅନେକ ଦିନ ପର୍ଯ୍ୟନ୍ତ ଆମେ ଦୁଇଜଣ ଏକା ହଷ୍ଟେଲରେ ଥିଲୁ ।"

ପ୍ରଭାତ ଉତ୍ତର ଦେଲା, "ସେ କଥା ମୁଁ ଜାଣେ ।"

ଏଲି—ଆଚ୍ଛା, କୁସୁମ ତ ଦେଖିବାକୁ ମନ୍ଦ ନୁହେଁ । ତେବେ ମୋ ସାଙ୍ଗରେ ତୁମେ ମାତଛ କାହିଁକି ?

ପ୍ରଭାତ—ସେ ଉତ୍ତର ତ ମୁଁ ଦେଇପାରିବି ନାହିଁ । ତେବେ ତୁମ ସାଙ୍ଗରେ ମୁଁ ମିଶୁଛି କାହିଁକି, ତାର ଉତ୍ତର ତୁମେ ନିଜେ ଭଲ କରି ଜାଣ । ଲୁହାକୁ କଣ କାରଣ ଦର୍ଶାଇବାକୁ ହେବ, କାହିଁକି ସେ ଚୁମ୍ବକ ଆଡ଼କୁ ଆକୃଷ୍ଟ ହୁଏ ?

ଏଲି—ତୁମ ସ୍ତୁତିବାକ୍ୟରେ ମୁଁ ଯଥେଷ୍ଟ ଆପ୍ୟାୟିତ ହେଲି । କହନ୍ତି, ସ୍ୱେଚ୍ଛା କରି ପିଇଲେ ପାଣି ବି ମିଠା ଲାଗେ । ଆଉ ତୁମେ ହେଉଛ ରଜାର ହାତୀ, ବନସ୍ତରେ ବୁଲିଲେ ବି ରଜାର । ଘରର ମାଲ ତ ଘରେ ଅଛି, ବାହାରେ ବୁଲି ଚରି ସ୍ୱେଚ୍ଛାରେ ଲୁଚେଇ ଯଦି ଅନ୍ୟ ମାଲ ବଶୀଭୂତ କରାଯାଇପାରେ, ତେବେ ବୁଦ୍ଧିମାନ ଲୋକ ଦୃଷ୍ଟିରେ ସେଥିରେ ଲାଭ ବିନା କ୍ଷତି ନାହିଁ । କିଣ କହୁଛ ପ୍ରଭାତ ବାବୁ, ଏ ବି କିଣ ଗୋଟାଏ କାରଣ ହୋଇପାରେ ନାହିଁ ? କଥାରେ କହନ୍ତି, ନେଇ ଆଣି ଧୋଇ ଜାଣିଲେ ସ୍ୱେଚ୍ଛା ବିଦ୍ୟା ଭଲ । ଅଚ୍ଛା, ତୁମେ ଯେ ମୋ ସଙ୍ଗରେ ମିଶୁଛ, ଏ କଥା କିଣ କୁସୁମ ଜାଣେ ?

ପ୍ରଭାତ—ତା ଜାଣେ ।

ଏଲି—ମୋ କଥା ବୁଝିପାରିଲି ନାହିଁ । ମୋ ସହିତ ତୁମର ଏହି ସମ୍ପର୍କ ବିଷୟରେ କିଣ ତୁମେ କେବେ କୁସୁମକୁ କହିଛ ?

ପ୍ରଭାତ—ନା ।

ଏଲି—କାହିଁକି କହି ନାହିଁ ?

ପ୍ରଭାତ—ଲାଭ କିଣ ?

ଏଲି—ଲାଭ ସତ୍ୟକୁ ପ୍ରକାଶ କରିବା ।

ପ୍ରଭାତ ବୁଝିଲା, ଏଲି ସହିତ ତାହାର ଏହି ସମ୍ପର୍କ ବିଷୟରେ ଯେଉଁ ସତ୍ୟଟିକୁ କୁସୁମ ନିକଟରେ ପ୍ରଭାତ ପ୍ରକାଶ କରୁ ବୋଲି ଏଲି ଚାହୁଁଛି, ତାହା ସତ୍ୟ ପ୍ରତି ତାର ଅତ୍ୟଧିକ ଆଗ୍ରହର ନିଦର୍ଶନ ନୁହେଁ ; ତାହା ହେଉଛି ଶତ୍ରୁ ଦାରର ବିଜୟ ଗର୍ବ, ଯାହା ଅନୁଭବ କରିବାକୁ ସ୍ୱେଚ୍ଛାର କେବେ କେବେ ଦୁର୍ବୁଦ୍ଧି ଘଟେ ନିଜର ଶୌର୍ଯ୍ୟବୃତ୍ତିର ବାହାଦୁରୀରେ ଆସ୍ଫାଳନ କରିବାରେ, ବିଶେଷ କରି ଯାହାର ସ୍ୱେଚ୍ଛା କରିଛି ତାରି ଆଗରେ । କିଛିକ୍ଷଣ ମୌନ ରହି ପ୍ରଭାତ ଉତ୍ତର ଦେଲା—

"ସେପରି ସତ୍ୟ ପ୍ରକାଶରେ ବି ଲାଭ କିଣ ? ବରଂ କ୍ଷତି ବେଶି ।"

# ସାମୟିକ

ଏଲି—ଲଭ ଆଉ କିଛି ହେଉ ନ ହେଉ, ପ୍ରଣୟ ତ ପରୀକ୍ଷିତ ହେବ ?

ପ୍ରଭାତ—ମୋର ପ୍ରଣୟ କଣ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ନାହିଁ ? ମୁଁ ବିବାହିତ ଏବଂ ପିଲାଝିଲାର ବାପ, ସ୍ତ୍ରୀ ଏଯାବତ୍ ମୋର ଅନୁଗତ, ସ୍ୱାମିଗତ ପ୍ରାଣ । ଏ ଆକର୍ଷଣ ସବୁ ମୁଁ ଯେ ମାତ୍ର ଚଳନ୍ତି ଅଗ୍ରସର ହେଉଛି ତୁମକୁ ଲଭ କରିବାକୁ, ସେଥିରୁ କଣ ମୋର ପ୍ରଣୟର କୃତିତ୍ୱ ଜଣାପଡୁନାହିଁ ? ମୋର ପ୍ରଣୟ କଣ ଯଥେଷ୍ଟ ପ୍ରମାଣିତ ହେବ, ଯଦି ମୁଁ ତୁମ ସହିତ ମୋର ସମ୍ପର୍କ ବିଷୟରେ ମୋର ସ୍ତ୍ରୀକୁ କୁହେ ଏବଂ ତାର ଫଳରେ ମୋର କ୍ଷୁଦ୍ର ସଂସାରରେ ଗୋଟାଏ ପ୍ରଳୟର ଝଡ଼ ସୃଷ୍ଟି କରି ମୋତେ ଆଶ୍ରୟ କରି ଯେ କେତୋଟି ଜୀବନ ବଢ଼ି ଉଠୁଛି, ତାଙ୍କୁ ଉତ୍ପାଟିତ କରି ଇତସ୍ତତଃ ଛିନ୍ନଭିନ୍ନ କରିପକାଏ ?

ଏଲି—ପ୍ରଭାତ ବାବୁ, ତୁମେ ମୋତେ ବିଭା ହେବ ?

ପ୍ରଭାତ—ଆଇନ୍ ଅନୁସାରେ ବାଇଗେମି ଦୋଷ ଘଟିବ ।

ଏଲି—ବିବାହ ଆଇନ୍‌ସଙ୍ଗତ ହେବ, ଯଦି ମୋ ସହିତ ତୁମର ସମ୍ପର୍କର କଥା କୁସୁମକୁ କହି ତାଠାରୁ ଛାଡ଼ପତ୍ର ଯୋଗାଡ଼ କରିପାର ।

ପ୍ରଭାତ—ଏପରି ବିଭାରେ ଲଭ କଣ ବା ଏହାର ଦରକାର କଣ ?

ଏଲି—ତୁମ ଉପରେ ମୋର ଅଧିକାର ରହିବ ।

ପ୍ରଭାତ—ତା କଣ ରହିବ ? କୁସୁମ ତ ମୋତେ ବିଭା ହୋଇଛି । ମୋର ମନ କଣ ତାର ଅଧିକାରକୁ ମାନୁଛି ?

ଏଲି—ତୁମେ କଣ ବାସ୍ତବିକ ମୋର ପ୍ରଣୟାସକ୍ତ ? ତୁମେ କଣ ମୋତେ ପ୍ରେମ କରୁଛ ?

ପ୍ରଭାତ—ମୋତେ ଯଦି ସତ କହିବାକୁ ହୁଏ, ତାହା ହେଲେ ମୁଁ କହିବି, ମୁଁ ଏତେ ଭୋଳ ଯେ, ତୁମ ପ୍ରତି ଏ ଯେଉଁ ଆକର୍ଷଣ ମୁଁ ଭିତରେ ଅନୁଭବ କରୁଛି, ତାକୁ ବିଶ୍ଳେଷଣ କରି ତାର ନାମକରଣ କରିବା ଭଳି ଧୈର୍ଯ୍ୟ ମୋର ଏ ପର୍ଯ୍ୟନ୍ତ ହୋଇ ନାହିଁ ।

ଏଲ୍—ତା ମାନେ, ଏ ଗୋଟାଏ ନିଶାର ଝୁଙ୍କ, ସାମୟିକ ଉତ୍ତେଜନା; ଭାଙ୍ଗିବାର ବେଳ ଆସି ନାହିଁ । ଯେତେବେଳେ ନିଶା ଆଉ ଛାଡ଼ିଯିବ, ସେତେବେଳେ ସୁବୋଧ ବାଳକଟି ପରି ଆସି କହିବ, "ମୁଁ ବର୍ତ୍ତମାନ ବୁଝୁଛି, ତୁମ ପ୍ରତି ମୋର ଯେଉଁ ଆସକ୍ତି, ତାହା ପ୍ରେମ ନୁହେଁ, ତାହା କେବଳ ସାମୟିକ ମୋହ । ମୋତେ କ୍ଷମା ଦେବାକୁ ହେବ ।" ପ୍ରଭାତ ବାବୁ, ରଙ୍ଗିନ୍ ବାବୁଙ୍କୁ ଚିହ୍ନ ? ସେ ବା ଥରେ ଠିକ୍ ଏଇ କଥା ମୋତେ କହିଥିଲେ ।

ପ୍ରଭାତ—ମୁଁ ଦେଖୁଛି, ପୁରୁଷଙ୍କ ସହିତ କାରବାରରେ ତୁମର ଏ ଅଭିଜ୍ଞତା ଯଥେଷ୍ଟ ଅଛି ।

ଏଲ୍—ମୋତେ କଣ ପନ୍ଦର ବର୍ଷର ଟୋକୀଟିଏ ପାଇଛ ? ମୋର ବୟସ କେତେ ହେବ, ପ୍ରଭାତ ବାବୁ ?

ପ୍ରଭାତ—ଠିକ କହିପାରିବି ନାହିଁ; ତେବେ ବୋଧ ହୁଏ ପନ୍ଦରର ଡ଼ବଲର ଆଖପାଖ ।

ଏଲ୍—ମୁଁ ଦେଖୁଛି, ହିସାବ କିତାପ କରିବାରେ ତୁମର ବଡ଼ ବେଶି ଭୁଲ ହୁଏ ନାହିଁ । କେବେ ହିସାବ କରି ଦେଖିଛ, ସଂସାରରେ ପ୍ରବେଶ କରିବା ଭଳି ଅଭିଜ୍ଞତା ପନ୍ଦର ବର୍ଷର ସ୍ତ୍ରୀପିଲାର ବେଶି, ନା ପନ୍ଦର ବର୍ଷର ପୁରୁଷ ପିଲାର ବେଶୀ ?

ପ୍ରଭାତ—ମୁଁ ନିର୍ବିବାଦରେ ସ୍ୱୀକାର କରୁଛି, ତୁମେ ମୋଠାରୁ ବୟସରେ ସାନ ହେଲେ ସୁଦ୍ଧା ଏବଂ ଅବିବାହିତ ଅବସ୍ଥାରେ ଥିଲେ ସୁଦ୍ଧା, ସାଂସାରିକ ଅଭିଜ୍ଞତା ତୁମର ବେଶୀ ।

ଏଲ୍—ତୁମେ କଣ ମନେ କରୁଛ, ତୁମେ ବିଭା କରିଛ ବୋଲି ତୁମର ସାତଖୁଣ ମାଫ୍ ? ତୁମେ ଗୋଟିଏ ସ୍ତ୍ରୀଲୋକକୁ ବିଭା ହୋଇଛ ବୋଲି ସେଥିରୁ କାଣିଯୁ ଅଧିକାର ଆଉ ସମସ୍ତ ସ୍ତ୍ରୀଲୋକଙ୍କ ଉପରେ ସ୍ୱଚ୍ଛନ୍ଦରେ ଖଟେଇପାର, ଆଉ ମୁଁ ବିଭା ହୋଇ ନାହିଁ ବୋଲି ମୋର କର୍ତ୍ତବ୍ୟ ହେଉଛି

# ସାମୟିକ

କୌଣସି ପୁରୁଷ ସହିତ ମିଶିବ ନାହିଁ, ବନ୍ଦ ଜାଲି ଝରକା ଖୋଲି ବସି ରହିବ, ମୋର ନିଃସଙ୍ଗ ଜୀବନର ଦୀର୍ଘ ବାଟୁଆ ସ୍ୱଚ୍ଛଗୋଷ୍ଠାକ କୌଣସି ଗୋଟିଏ ଅନିଶ୍ଚିତ ଜୀବନବନ୍ଧୁର ଅପେକ୍ଷାରେ, ତା ଉକ୍ତ ଜୀବନବନ୍ଧୁଟି ତୁମପରି ବିବାହିତ ହେଲେ ସୁଦ୍ଧା ମୋର କଠୋର ପ୍ରତୀକ୍ଷା ବ୍ରତର ତଳେ ମାତ୍ର ଏ ପାଖ ସେ ପାଖ ହେବ ନାହିଁ ।

ପ୍ରଦ୍ୟୁତ— ମୁଁ ତ ଆଗରୁ ସ୍ୱୀକାର କରିଛି ଯେ, ତୁମର ପୁରୁଷଙ୍କ ସହିତ ମିଳାମିଶା କରିବାର ଯଥେଷ୍ଟ ଅଭିଜ୍ଞତା ଅଛି । ବର୍ତ୍ତମାନ ତୁମର ଯୁକ୍ତି ଶୁଣି ମାନି ନେଉଛି, ଏପରି କହିବାରେ ସ୍ତ୍ରୀର ଯଥେଷ୍ଟ ସ୍ୱାଧୀନତା ଏବଂ ଯୁକ୍ତିଯୁକ୍ତତା ଅଛି । ଦୈବାତ୍ ବିବାହିତ ହେବାରୁ ଯଦିବା ଯଥେଚ୍ଛା ଚରିବୁଲି ଖାଇବାର ଅଧିକାର ତୁମର ମତ ଅନୁସାରେ ମୋର ନାହିଁ, ତେବେ ତୁମେ ବା କାହିଁକି ତୁମର ବାଟୁଆ ଅବସ୍ଥାର ସମସ୍ତ ସୁବିଧାରେ ଜଳାଞ୍ଜଳି ଦେଇ ବିବାହିତ ଜୀବନର ଯାବତୀୟ ବାଧାବନ୍ଧନ ଭିତରେ ପ୍ରବେଶ କରିବାକୁ ଏପରି ବ୍ୟସ୍ତ ହୋଇପଡ଼ୁଛ ଯେ, ଅପର ପକ୍ଷଟି ବିବାହିତ କି ଅବିବାହିତ, ତା ମଧ୍ୟ ବାଛିବାକୁ ତୁମର ତର ନାହିଁ ? ଏଥିରୁ କଣ ବୁଝିବି ଯେ, ଏ ଅଧମ ବିବାହିତ ହେଲେ ସୁଦ୍ଧା ତା ସକାଶେ ତୁମର କରୁଣାର ସୀମା ନାହିଁ, ଅବା ବିବାହିତ ସହିତ ପୁନର୍ବିବାହ ତୁମର ସ୍ୱାଧୀନତାର ବ୍ୟବସାୟ ପକ୍ଷରେ ଅନୁକୂଳ ଅବା ଯଥେଷ୍ଟ ଆଉଆଳ ହେବ ?

ଇଲା—ତୁମର ଯାହା ଇଚ୍ଛା ତାହା ବୁଝ, ଆଉ ବେଶି କଥା ବଢାଇବାର ଦରକାର ନାହିଁ ; କାରଣ ମୋର ସମୟ ନାହିଁ ।

ପ୍ରଦ୍ୟୁତ—ସମୟ ନାହିଁ କାହିଁକି ?

ଏଲା—ମୁଁ ମୋର ଜଣେ ବନ୍ଧୁଙ୍କୁ କଥା ଦେଇଛି, ତାଙ୍କ ସଙ୍ଗରେ ଆଜି ରଙ୍ଗମହାଲରେ 'ମହାନିଶା'ର ଅଭିନୟ ଦେଖିବାକୁ ଯିବ । ତାଙ୍କର ଆସିବାର ପ୍ରାୟ ସମୟ ହେଲାଣି ।

ଏଲି ଏତିକି କହିବା ସମୟରେ ବାହାରେ ହର୍ଣ୍ଣର ଆବାଜ ହେଲା । ତାହା ଶୁଣି ଏଲି କହିଲା,—"ଏଇ 'କାର' ଆସିଲାଣି, ମୁଁ ଆଉ ଅପେକ୍ଷା କରିପାରିବ ନାହିଁ ।" ଏହା କହି କ୍ଷିପ୍ରଗତିରେ ତଳକୁ ଓହ୍ଲାଇ ଆସିଲା ।

ପ୍ରଭାତ ସୁପ୍ରୋତ୍ଥିତର ପରି ଉଠିଯାଇ ଉପର ବରଣ୍ଡାରୁ ଦେଖିଲା, 'କାର'ରେ ଉଠି ଏଲି ବସିଲା ଗୋଟିଏ ଫିଟ୍‌ଫାଟ୍‌ ବଙ୍ଗାଳୀ ଯୁବକ ପାଖରେ, ଆଉ ସୋଫର ଗାଡ଼ି ଛାଡ଼ିଦେଲା । ପ୍ରଭାତର ଦମ୍‌ ଅଟକି ଯିବା ପରି ହେଲା । ତାର ମନେ ହେଲା, ଯେପରି ସେ କାମରାର ବାୟୁମଣ୍ଡଳ ବିଷାକ୍ତ । କାଳ ବିଳମ୍ବ ନ କରି ଓହ୍ଲାଇ ଆସି ବାହାରି ପଡ଼ିଲା ରାସ୍ତା ଉପରକୁ । ନୈଶ ଆକାଶର ମୁକ୍ତବାୟୁ ତାକୁ ଯେପରି ହାତ ବଢ଼ାଇ ଟାଣି ନେଲା ନିଜ ଆଡ଼କୁ ।



# ଭୁଆଁବୁଲା

କଣ ପାଇଁ କେଜାଣି ସେଦିନ ସ୍କୁଲ୍ କଲେଜ କଚେରି ସବୁ ବନ୍ଦ ଥିଲା । ବେଳ ଅନ୍ଦାଜ ସକାଳ ସାତଟା । ରଚନା ବଡ଼ ପୋଖରି ନିମ୍ବଗଛମୂଳେ ଜିଆ ଖୋଳୁଥିଲା, ଇଚ୍ଛା—ଖରାବେଳେ ଏହି ଗଛ ଆଢୁଆଳରେ ବସି ବଡ଼ ପୋଖରୀରୁ ମାଛ ମାରିବ । ଏହିପରି ସମୟରେ ଗାଧୋଇବାପାଇଁ ଆସି ପହଞ୍ଚିଲା ଜଜ—ଅସଲ୍ ନାମ ଜର୍ଜ ।

ଜଜ ପଚାରିଲା, "ରଚନା, ଜିଆ ଖୋଳୁଛୁ ? ଖୋଳ ଖୋଳ, ଥୋଡ଼ା ବେଶି କରି ଖୋଳ । କୋଉଠି ସ୍ୱରି କରିବୁ ?"

ରଚନା—ଆରେ ଦେଢ଼, ମୁଁ ମଣ୍ଡାପଡ଼ା ଯିବି ମାଛ ମାରି, ଏଠି କଣ ମାରିବି କି ?

ଜଜ—ଦାଣ୍ଡ ଆଗରେ ପେଟ ଲୁଚଉଛୁ ? ତୁ ହେଲୁ ଝୋଟ, ଆଉ ଝୋଟଙ୍କ ଭାଇ ଗଣ୍ଡିକଟା ହେଲି ମୁଁ ।

ଏମାନଙ୍କର କଥା ନ ସରୁଣୁ କାନ୍ତ, ଅଲ୍ଲାଦ, ଚନ୍ଦ୍ର, ବାଞ୍ଛା, ନନ୍ଦ, ଯିବୁଇନ୍ ପ୍ରଭୃତି ସାହିର ଅନ୍ୟାନ୍ୟ ଟୋକାଏ ଆସି ପହଞ୍ଚିଗଲେ ଗାଧୋଇବା ପାଇଁ । ମଣ୍ଡାପଡ଼ା କଥା ଶୁଣି ତାଙ୍କ ଭିତରୁ କିଏ କହିଲା, "ଚାଲନା, ତୁଛି ତ ଅଛୁ, ମଣ୍ଡାପଡ଼ା ଯିବା ।" ସମସ୍ତେ କହିଲେ, "ହଁ, ହଁ, ତୁଛିଟା ଅକାରଣେ ଯାଉଛୁ, ଚାଲ୍ ଗାଧୋଇ ପାଧୋଇ ଖାଇପିଇ ମଣ୍ଡାପଡ଼ା ଯିବା ।" ଟୋକାଟାକଳିଆ, ଘଡ଼କେ ଘୋଡ଼ା ଛୁଟେ; ସମସ୍ତେ ଯିବାକୁ

ରାଜି ହେଲେ । ନନ୍ଦ ଏ ସବୁ ଶୁଣି କହିଲା, "ବାବା, ଆଗରୁ କହି ରଖୁଛି, ମାଲ୍ ନ ନେଲେ ଯିବ ନାହିଁ । କିଛି ମାଲ୍ କଟକରୁ ନେବା, କିଛି ସେଠି ପହଞ୍ଚି ଚଉଦୁଆରରୁ ମଗାଇବା । ଆଉ ରଚନା ଯାହା ମାରିବ, ତାହା ହେବ ଗ୍ରେଟ୍ ।"

ନନ୍ଦ କଥାରେ ସମସ୍ତେ ରାଜି ହେଲେ । ଘଣ୍ଟା ଦୁଇ ଭିତରେ ସବୁ ଆସି ସାହି ଛକ ଉପରେ ହାଜର । କାହା ହାତରେ ତାସ ବିଡ଼ାଏ, କାହା କାଖରେ ପଶାପାଲି, କିଏ କାନ୍ଧରେ ଡ଼ୋର ବନର୍ଶୀ ପକାଇଛି, କାହା ଚଦର ତଳେ କାଖରେ ବୋତଲ—ଇତ୍ୟାଦି ପ୍ରକାର ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ମାଲକଚ୍ଛା ମାରି ଯୋଦ୍ଧାମାନେ ବାହାରିଲେ ମଣ୍ଡାପଡ଼ା ଅଭିମୁଖରେ ।

ନଲୁକୁ ସାଙ୍ଗରେ ଆସିବାର ଦେଖି ଚନ୍ଦ୍ର କହିଲା, "ଠାନେସ୍ତ ଛାପାଖାନା, ପୋଷ୍ଟ ଅଫିସ, ମ୍ୟୁନିସିପାଲିଟି, ଡାକ୍ତରଖାନା, ଏ ସବୁର ପ୍ରତିନିଧି ଯାଉଛନ୍ତି, କଲେଜ କାହିଁକି ବାଦ ପଡିବ ? ଚାଲ ବାବା ନଲୁ ଚାଲ, ସାଙ୍ଗରେ ଜଣେ ପଢାଶୁଣା ଲୋକ ଥିଲେ ଭଲ ।

ମଣ୍ଡାପଡ଼ାରେ କି ମୋହିନୀ ଅଛି କେଜାଣି, ମଣ୍ଡାପଡ଼ାର ଆକର୍ଷଣଟା ସମସ୍ତେ ଅନୁଭବ କରନ୍ତି, ବିଶେଷତଃ ଅବସର ବାସରେ । 'ସଣ୍ଡେସ୍କୁଲ୍' ଖେଳି କରିବାକୁ ହେଲେ ଚାଲ ମଣ୍ଡାପଡ଼ାରେ କରିବା, ବଣଭୋଜି ପାଇଁ ଚାଲ ମଣ୍ଡାପଡ଼ା ବଡ଼ତୋଠାକୁ ଯିବା । ମଦୁଆ ମାଛୁଆ ସମସ୍ତଙ୍କର ମଉଜ ମଜଲିସ କରିବାକୁ ହେଲେ ମଣ୍ଡାପଡ଼ା ମନେ ପଡ଼େ ।

ଯାହାହେଉ, ସାହିରୁ ବାହାରି ବକ୍‌ସିବଜାର ନ ଟପୁଣୁ ନଲୁକୁ ଛାଡି ସମସ୍ତେ ଖଟି ଭିତରକୁ ଯାଇ ଥୋଡ଼ା ବହୁତ ପକାଇ ଦେଇ ଭବିଷ୍ୟତର ଆୟୋଜନକୁ ସୁନିଶ୍ଚିତ କରି ଖୁସ୍ ମିଜାସ୍‌ରେ ନଈ ଆଡ଼କୁ ଅଗ୍ରସର ହେଲେ ।

# ସାମୟିକ

ଉପରେ ଝେଡୁଆ ଖପରରେ ମୁଣ୍ଡ ଫାଟିଯାଉଛି, ତଳେ ନଈବାଲି ଏମିତି ତାତିଛି ଯେ, ଧାନ ପକାଇ ଦେଲେ ଖଇ ଫୁଟିଯିବ । ସହଜେ ପେଟରେ ତ ନିଆଁ ପଡ଼ିଛି ; ନଈକୂଳରୁ ଘାଟ ପାଖରେ ପହଞ୍ଚୁ ପହଞ୍ଚୁ ନିଶା ଅନେକଙ୍କ ମୁଣ୍ଡରେ ଅଳ୍ପ ବହୁତ ପହଞ୍ଚିଗଲା । ଏମାନଙ୍କର ଏ ଅବସ୍ଥା ଦେଖି ନିଳୁ ଘାଟିଆକୁ ସମସ୍ତଙ୍କର ଘାଟମୂଲ ଦେଇ ନାଉରିଆର ବକ୍‌ସିସ ନେଇ ତା ସାଙ୍ଗରେ ଦର ଦସ୍ତୁର କରୁଛି, ଏପରି ସମୟରେ ନନ୍ଦ ବାହାରି ପଡି କହିଲା, "କଥା କଣ ? ତୁ କେତେ ମାଗୁଛୁ ନାଉରିଆ ?"

ନାଉରି କହିଲା, "ବାବୁ ନଅ କହିବ ନା ଛଅ କହିବ, ବକ୍‌ସିସ ଟଙ୍କାଟିଏ ହୁକୁମ ହେଉ ।"

ନନ୍ଦ ଟଙ୍କାଟାର କଥା ଶୁଣି ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇ କହିଲା, "ବାବା, ଆମେ ବ ନଅ ଛଅ ଜାଣୁନା । ପଦେ ପଦେ କଥା ଆମ ପାଖରେ । ସେ ଟଙ୍କାଏ ଫଙ୍କାଏର କଥା ଛାଡ଼ ; ଖୁଦ୍ ଦେଢ଼ୋଟି ଟଙ୍କା ମିଳିବ । ନେବୁ ତ ନେ, ନଇତ ନିଜ ବାଟ ଦେଖ୍ ।" ଏ କଥା ଶୁଣି ତ ନାଉରି ଅବାକ୍ ! କାନ୍ତି ବାହାରି ପଡି କହିଲା, "ଆରେ କହୁଛୁ କଣ ? ବାବୁ କଣ ଅବଧା କହିଲେ ? ମରଦ୍‌କା ବାତ ନା ହାତୀକା ଦାନ୍ତ୍ । ଠିକ୍ ଟଙ୍କାଏ ଆମେ ଦେଇ ପାରିବା ନାହିଁ । ଛାଡ଼, ଡଙ୍ଗା ଛାଡ଼ ।"

ଏ ସବୁ ଶୁଣି ନାଉରିର ଅକ୍କଲ ଗୁଡୁମ୍ । କଣ କରିବ କିଛି ଜାଣି ନ ପାରିବାରୁ ଡଙ୍ଗା ଛାଡି ଦେବାଟା ସବୁଠାରୁ ସହଜସାଧ ମନେ କରି ଡଙ୍ଗା ଫିଟାଇ ଦେଲା ; କାରଣ ସେତେବେଳକୁ ସମସ୍ତେ ଯାଇ ଆରାମରେ ଡଙ୍ଗା ଭିତରେ ବସିଲେଣି ।

ଡଙ୍ଗା ମଝିନଈରେ ହେଲାରୁ ତିନି ଚାରି ଜଣ ମଦ ବୋତଲ କାଢି ଏକାଠି ଥୋଇଲେ । ନିଳୁ ମଦର ନାମ ଶୁଣିଥିଲା, ମଦର ପ୍ରଭାବ ସମାଜରେ ଦେଖିଥିଲା ; କିନ୍ତୁ ତାହା ସହିତ ସାକ୍ଷାତ୍ ପରିଚୟ ଏଯାବତ୍

# ଭୂଅଁ ବୁଲ

ତା' ଭାଗ୍ୟରେ ଘଟି ନ ଥିଲା । ସେଥିପାଇଁ ଏ ଅପରିଚିତ ଆଡ଼କୁ ପ୍ରଥମ ସାକ୍ଷାତର ସମସ୍ତ କୌତୂହଳ ସହିତ ଅନାଇଲା । ରଚନା କିନ୍ତୁ ସେ ଦୃଷ୍ଟିର ଅର୍ଥ ବୁଝି ନ ପାରି, ତାକୁ ପ୍ରାର୍ଥୀର ଲୋଲୁପ ଦୃଷ୍ଟି ମନେ କରି କହିଲା, "ମନ୍ଦାଏ ଦେବା କ ରେ ନିଲୁ ?" ନିଲୁ ଘୃଣାରେ ନାଇ ଆଡ଼କୁ ମୁହଁ ଫେରାଇ ଆଣିଲା । ଦେଖିଲା, ସନ୍ତାପହାରିଣୀ ମହାନଦୀର ଅଜସ୍ର ବାରି ସମ୍ମୁଖରେ ଅକାତରେ ପ୍ରବାହିତ ହେଉଅଛି । କିନ୍ତୁ ମନୁଷ୍ୟର ରୁଚି ଏପରି ବିକୃତ ଯେ, ସ୍ଥାବର ଜଙ୍ଗମ ସମସ୍ତଙ୍କ ପାଇଁ ପ୍ରକୃତିର ଏହି ଅସୀମ ଅପର୍ଯ୍ୟାପ୍ତ ଆୟୋଜନ ଥାଉଁ ଥାଉଁ ସେ ତରଳ ବହ୍ନି ପିଇବାକୁ ଇଚ୍ଛା କରୁଛି ।

ଭାଦ୍ରମାସର ଭରା ନଈ, ବଢ଼ି ଏ କୂଳ ସେ କୂଳ ଖାଉଛି । ବନ୍ଧୁଚି ଉପରକୁ ନେଇ ଡ଼ଙ୍ଗାକୁ ପ୍ରାୟ ଫାସିଦିଆ ବର ପାଖରୁ ଛାଡିବାକୁ ହୋଇଛି । ନାଉରୀ ବାବୁମାନଙ୍କର ନାନା ଉତ୍ପାତ ସହ୍ୟ କରି କୌଣସି ପ୍ରକାରେ ଡଙ୍ଗା ଆଣି ଯେତେବେଳେ ମଣ୍ଡାପଡ଼ାର ଠାଙ୍ଗର ନାସୀ ତଳେ ଛତିଆଣ ଗଛପାଖରେ ଭିଡ଼ିଲା, ସେତେବେଳକୁ ଦିନର ଖରା ମଉଳିଲାଣି । ସାଙ୍ଗେ ସାଙ୍ଗେ ଫଙ୍କାଫଙ୍କ ହୋଇଁ ପଡ଼ି ଯେ ଯେଉଁଆଡ଼େ ପାରିଲେ ସିଧା ସିଧା ମଣ୍ଡାପଡ଼ା ଆଡକୁ ମୁହିଁଲେ । ନାଉରୀ ବାପୁଡ଼ା ପଛରୁ ଗୋଡ଼େଇ ଗୋଡ଼େଇ କହୁଛି, "ବାବୁ, ମୋତେ ପଇସା ଦିଅ, ମୁଁ ଯାଏଁ ?" ଶୁଣୁଛି କିଏ ? ସମସ୍ତଙ୍କର ଖାତିର ନଦାରଦ । ନିଲୁ ଯେତେବେଳେ ଦେଖିଲା, କାହାରି ଦେବାର ସମ୍ଭାବନା ନାହିଁ, ପକେଟରୁ ଦେଢୋଟି ସୁଉକା କାଢି ନାଉରୀ ହାତରେ ଦେଇ କହିଲା, "ଯା ବାବା, ଆଉ ମୋ ପାଖରେ ପଇସା ନାହିଁ ।" ପଇସା ହାତରେ ନେଇ ନାଉରୀ କହିଲା, "କାହିଁ ଦେଢ ଠଙ୍କା, ଆଉ ଦେଢ ସୁଉକା ।" ନନ୍ଦ କହିଲା, " ଅରେ ଗମାର୍, ଦେଢ ତ ଠିକ୍ ଅଛି ।" ଗତ୍ୟନ୍ତର ନ ଦେଖି ଯଥାଲାଭ ବିବେଚନା କରି କାନମୁଣ୍ଡା ଆଉଁଷି ନାଉରୀ ଘରକୁ ଫେରିଲା । ମଉଜସାକ ମଣ୍ଡାପଡ଼ା ଆଡ଼କୁ ବଢିଲେ ।

## ସାମାଜିକ

ମଣ୍ଡାପଡାରେ ପହୁଞ୍ଚିଲା ବେଳକୁ ବେଳ ରତରତ । ପଶ୍ଚିମ ଗଗନ ମୂଳରେ ଗତାୟୁ ଦିନର ଚିତାଗ୍ନି ମ୍ଳାନ ହୋଇଆସୁଛି । ତାର ଆଭା ଆସି ପଡୁଛି ମଣ୍ଡାପଡା ଓ ତାର ଦୂରଆଡ଼ର ଧାନକ୍ଷେତ ଓ ନିକଟବର୍ତ୍ତୀ ଠାଙ୍ଗର ଉପରେ । ମଣ୍ଡାପଡ଼ା ଦିଶୁଛି ରଙ୍ଗମଞ୍ଚର ଦୃଶ୍ୟପଟ ପରି । କିଏ ଯେପରି ତା ଉପରକୁ ଗୋଲାପୀ ବର୍ଣ୍ଣକୂଳିବଣି ଘୂରାଇ ଦେଉଛି । କିନ୍ତୁ ଏ ସବୁ ଦେଖୁଛି କିଏ ?

ମଣ୍ଡାପଡ଼ାରେ ବି ଜଣେ ଦୁଇ ଜଣ ସାଙ୍ଗ ଜୁଟିଗଲେ । ସମସ୍ତେ ଆସି ଅଡା କଲେ ଠାଙ୍ଗରର ଚୂଳୀପଥର ତଳେ । ପ୍ରଥମରେ ସମସ୍ତେ ମସୁଧା କରୁଥିଲେ ଚୂଳୀପଥର ଉପରକୁ ଯାଇ ଅଡା ଜମାଇବାକୁ; କିନ୍ତୁ ତା ନିରାପଦଜନକ ହେବ ନାହିଁ ବୋଲି ସମସ୍ତେ ପଥର ତଳେ ଠାଙ୍ଗର ଉପରେ ଗୋଲ ହୋଇ ବସିଲେ । ମଝିରେ ରଖିଲେ ମଦରେ ଭରା ଦୁଇଟା ବୋତଲ, ତା ପାଖରେ ମାଂସ ଓ ଚଉଦୁଆରରୁ ଆସିଥିବା ଚାଖ ପାଇଁ ପତରରେ କିଛି ପିତାଶୁଖୁଆ ଚଟଣୀ । ନିଲୁ ବସିଲା ଚୂଳୀପଥର ଉପରେ, ତଳେ ଏମାନଙ୍କର ସମସ୍ତ ବ୍ୟାପାର ଭଲ କରି ଦେଖିବ ବୋଲି ।

ସାମାଜିକତା ମନୁଷ୍ୟ ଚରିତ୍ରରେ ଏପରି ପ୍ରତିଷ୍ଠିତ ଯେ, ସେ ଯେତେ ସମାଜବିଗର୍ହିତ କାର୍ଯ୍ୟ କରୁ ନା କାହିଁକି, ତାହା କରିବା ସମୟରେ ମଧ୍ୟ ସାମାଜିକ ଭଦ୍ରତା ଅନୁସରଣ କରିବାକୁ ଚେଷ୍ଟା କରେ । ଏ ମଦୁଆଙ୍କ ମେଳରେ ନିଲୁ ସେହି ଚେଷ୍ଟା ଦେଖି ଆଶ୍ଚର୍ଯ୍ୟ ହେଲା । କାରଣ ପ୍ରଥମେ ଜଣେ ଆଉନ୍ସ ଗିଲାସରେ ମଦ ଢାଳି ନିଜେ ନ ଖାଇ ପାର୍ଶ୍ୱବର୍ତ୍ତୀ ବନ୍ଧୁ ଆଡକୁ ବଢାଇ ଦେଲା । କିନ୍ତୁ ଏହି ସାମାଜିକ ଭଦ୍ରତା ସମସ୍ତଙ୍କ ମନରେ ଏପରି ତୀବ୍ର ଭାବରେ ଜାଗି ଉଠିଥିଲା ଯେ, ଆଉନ୍ସ ଗିଲାସଟି ଜଣ ଜଣ କରି ସମସ୍ତଙ୍କ ହାତରେ ବୁଲିଆସି ପ୍ରଥମରେ ଯେଉଁଠୁ ବାହାରିଥିଲା, ପୁଣି ଅଭୁକ୍ତ ଅବସ୍ଥାରେ ସେଇଟି ପହୁଞ୍ଚିଲା । ଆଉ ଥରେ ଗିଲାସକୁ ସେ କଣ୍ଠରେ

# ଭୁଆଁ ବୁଲ

ଘୁସୁରିବାକୁ ନନ୍ଦର ଧୈର୍ଯ୍ୟ ରହିଲା ନାହିଁ । ଚଟ୍ ତାହାଣ ହାତରେ ଗିଲାସକୁ ଉପରକୁ ଉଠାଇ ବାଁ ହାତରେ ନାକ ପୁଡାକୁ ଭଲ କରି ଚିପିଧରି ଏକା ଦମରେ ପିଇଦେଇ ମୁହଁ ପିତା କରି ବସିଗଲା । ସମସ୍ତଙ୍କର ପିଆପିଇ ସ୍ୱଚ୍ଛମତ ଚାଲିଲା, କିନ୍ତୁ ଅଲକ୍ଷଣ ସକାଶେ । କାରଣ ଗୋଟିଏ ବୋତଲ ଶେଷ ନ ହେଉଣୁ ଅଶାନ୍ତି ଆସି ପହଞ୍ଚିଲା । ଝଣାଓଝଣାରେ ମାଂସହାଣ୍ଡି ଭାଙ୍ଗିଗଲା । କିଏ ବୋତଲ ନ ଫିଟାଇ ବୋତଲ ମୁହଁକୁ ଚୁଲୀପଥରରେ ଠେକିଦେଇ ଢକଢକ ପିଉଛି, କିଏ ହାଣ୍ଡି ଢେଙ୍କୁଆରେ ପିଉଛି । ଦେଖୁ ଦେଖୁ ମଦ ସରିଗଲା । ପାଞ୍ଚ ଦିନର ଯେଉଁ ଅମିଳ ତୋରାଣିକୁ ଗୋରୁଚମାରୁ ଛାଣି ମାଟିଆରେ ପୁରାଇ "କାଶଆ" କଣ୍ଟାରି ଚଉବୁଆରର ଚାଉ ବୋଲି ଦେଇଯାଇଥିଲା, ତାହାରି ଶ୍ରାଦ୍ଧ ଆରମ୍ଭ ହେଲା । ମାଟିଆରୁ ଢାଳିଲା ବେଳକୁ ପଚା ତୋରାଣିର ଗନ୍ଧ ନିଲୁର ନାକ ପର୍ଯ୍ୟନ୍ତ ଉଠିଗଲା । ସେ କହି ପକାଇଲା, "ଏ କଣ ପଚାତୋରାଣି ପରି ଗନ୍ଧଉଛି ।" ଏହା ଶୁଣି ନନ୍ଦ କହିଲା, "କିଏ ସେ ସେ ଗମାର, କହିଲା ପଚାତୋରାଣି ? ଅରେ, ଏ ଏକଦମ ଖାଣ୍ଟି ଅସଲି ମାଲ ।" ଯାହା ହେଉ, ଏଥି ଅସଲି ମାଲରୁ ଅର୍ଦ୍ଧକରୁ ବେଶି ଶେଷ ହେବା ପୂର୍ବରୁ ଝଣାଓଝଣାରେ ମାଟିଆ ଭାଙ୍ଗିଗଲା । କିଏ ମାଟିଆ ଭାଙ୍ଗିଲା ବୋଲି ମହା ଗୋଳମାଳ ଉଠିଲା । ହାତାହାତି ବଧାଗୋଇଠା ମଧ୍ୟ ହୋଇଗଲା । ତାଙ୍କ ଭିତରୁ ଜଣେ କିଏ କହିଲା, "ଚାଲ ଗାଁକୁ ଯିବା, ପୁଣି ଚାଉ ମଗାଇବା ।" ସମସ୍ତେ ହୁହା କରି ଉଠିଲେ । ମଣ୍ଡାପଡା ଗାଁକୁ ଯିବେ କଣ, ଚାଲିଲେ ଝାଙ୍ଗର ଭିତରକୁ । ଏହା ଦେଖି ନିଲୁ ଓହ୍ଲାଇ ଆସି କହିଲା, "ଆରେ ଯାଉଛ କୁଆଡେ ? ଗାଁ ତୁମ ପଛଆଡେ ।" କିନ୍ତୁ ପରାମର୍ଶ ଶୁଣିବାର ଅବସ୍ଥାରେ ସେମାନେ ଥିଲେ ସିନା ଶୁଣିଥାନ୍ତେ । ସେତେବେଳକୁ ବୋଧହୁଏ ସ୍ମରଣ ଶକ୍ତି ମଧ୍ୟ ସେମାନଙ୍କର ଲୋପ ପାଇଲାଣି । କାହିଁକି ନା, ନିଲୁ ଉତ୍ତର ଖାଣ୍ଟି ଓଡିଆରେ ନ ପାଇ ଦରକଣ୍ଡି ହିନ୍ଦିରେ ପାଇଲା । କିଏ କହିଲା, "ତୁମ୍ କୁଛ୍ ନାହିଁ ଜାନତାରେ, ମଣ୍ଡାପଡା ଗାଁ ଆଗ୍‌ମେ ହେ,

ପିଛମେ ନାହିଁ ।" କିଏ କହିଲା, "ଜରୁର ଅଗମେ ହୋଗା ।" କିଏ କହିଲା, "ନାହିଁ ହୋଗା ତ ହାମ୍‌ଲୋକ୍‌କା ବାସ୍ତେ ହୋନେ ହୋଗା ।" କିଏ କହିଲା, "ତାଙ୍କୁ କିଆ ଖାଇ ମଣ୍ଡାପଡ଼ାମେ ହେ, କଟକ୍‌ମେ କଣ ନାହିଁ ହେ ? ସବ୍ ସାମ୍‌ନାମେ ମଣ୍ଡାପଡ଼ା ନାହିଁ ପଡ଼େଗା, କଟକ୍ ତ ପଡ଼େଗା; ନଈ ପହିଁରକେ ଯାଏଗା ।" ଏଭଳି ତର୍କ ଶୁଣି ତ ନିଲୁ ତଟସ୍ଥ । ସେମାନଙ୍କଠୁଁ କିଛାମିଠା ଧମକ ଖାଇ ତେବେ ବି ତାଙ୍କ କହିଲା, "ଆରେ ସେ ଅଢ଼େ ଖାଲି ଖାତ, ଯାଅନା ସେ ଅଢ଼େ । ଥରେ ସେ ଖାତର ଗୋଲକଧନ୍ଦାରେ ପଡିଲେ ସହଜରେ ବାହାରି ପାରିବ ନାହିଁ । ଖାଲି ହାତଗୋଡ଼ ଭୁଙ୍କାକୁ ଭାଙ୍ଗିବ ।" କିନ୍ତୁ ଶୁଣୁଛି କିଏ ? ଯେଝା ବାଟରେ ଯେଝା ଚାଲିଗଲେ । ଖାଲି ଦୂରରୁ ଥରେ ଥରେ ଶୁଭିଲା, "ଆରେ ଧର ଧର—ପଡିଲି ପଡିଲି—ହାତ ଗଲା—ବେକ ଗଲା—ଉଃ ଉଃ ।"

କ୍ରମେ ମଦୁଆଙ୍କର ସ୍ୱର କ୍ଷୀଣ ହୋଇଆସିଲା । ସେମାନେ ନିଲୁର ଦୃଷ୍ଟି ଏବଂ ଶ୍ରବଣ ଉଭୟଙ୍କର ବହିର୍ଭୂତ ହୋଇଗଲେ । ରାତି ଯେ ହୋଇଗଲାଣି, ଜହ୍ନ ଯେ ଉଠିଲାଣି, ମଦୁଆଙ୍କର ମାତଲାମିରେ ପଡି ନିଲୁର ଏ ଖିଆଲ ନ ଥିଲା । ବର୍ତ୍ତମାନ ଦେଖିଲା, ଶରତର ଚନ୍ଦ୍ର ପୃଥିବୀକୁ ସ୍ନିଗ୍ଧ କରି ରଖିଛି; କିନ୍ତୁ ପ୍ରକୃତିର ସେହି ସାନ୍ଧ୍ୟ ମାଧୁରୀ ଭୋଗ କରିବାକୁ ତାର ସମୟ ନ ଥିଲା । ମଦୁଆଙ୍କୁ ଉପରି ଏହି ଉପସ୍ଥିତ ବିପଦରୁ ରକ୍ଷା କରିବ, ଏହି ଚିନ୍ତାରେ ସେ ବ୍ୟସ୍ତ । ଏକୁଟିଆ ଠାଙ୍ଗରେ ଖାତକୁ ଯିବାକୁ ବିପଦଜନକ ମନେ କରି ଗାଁ ଲୋକମାନଙ୍କୁ ଖବର ଦେବାକୁ ମଣ୍ଡାପଡା ଦଉଡିଲା ।

ମଣ୍ଡାପଡାର ଟୋକାବୁଢା ସମସ୍ତେ ଠେଙ୍ଗାବାଡି ଲଣ୍ଠନ ନେଇ ଠାଙ୍ଗରକୁ ବାହାରିଲେ । ସେ ଜହ୍ନ ଆଲୁଅରେ ଲଣ୍ଠନ ନେଇ ସୁଦ୍ଧା କେଉଁ ମଦୁଆ କେଉଁ ଖାତରେ ପଡିଛି ଠିକଣା କରିପାରିଲେ ନାହିଁ ।

ମଣ୍ଡାପଡ଼ା ଠାଙ୍ଗର ମହାନଦୀ କୂଳରୁ ମଣ୍ଡାପଡ଼ା ପର୍ଯ୍ୟନ୍ତ ପ୍ରାୟ ପାଞ୍ଚ ବର୍ଗ-ମାଇଲ ନେଇ ବିସ୍ତୃତ । ଏହି ଠାଙ୍ଗରର ଗୋଡି ପଥରରେ କଟକ ସହର ଓ

# ଭୁଆଁ ବୁଲା

ଜଲ୍‌ର ସଡ଼କମାନ ଛିଆର୍। ଏହି ଗୋଡ଼ପଥର ଖୋଳିବା ମଣ୍ଡପଡ଼ାବାସୀ କୃଷୀଙ୍କର ଗୋଟିଏ ଉପଜୀବିକା। ଚୂଲୀ ପଥର ଉପରୁ ଠାଙ୍ଗରକୁ ଅନାଇଲେ ଗୋଟିଏ ମହୁଫେଣା ପରି ଦିଶେ। ସେଇଁ ଅଡ଼କୁ ଅନାଅ ଖାଲି ଖାଡ,ଢୋରଡ଼ି। ଏ ମଧୁଚକ୍ରରୁ ମତ୍ତ ମଧୁପଙ୍କୁ ଖୋଜି ବାହାର କରିବା ମଣ୍ଡାପଡ଼ିଆଙ୍କର ଦୁଃସାଧ ହେଲା। ଶେଷକୁ ସେମାନଙ୍କ ମଧ୍ୟରୁ କେତେକ ବୃଦ୍ଧ କହିଲେ, "ଏ କଠିକିଆ ମହୁଆସୁଡ଼ାଙ୍କୁ ଭୁଆଁ ବୁଲେଇଛି ହେ, ସ୍କୁଲ ପିଲାଏ ଗାଁକୁ ଫେରିସିବା। ଆମେ କାହିଁକି ଛୁଞ୍ଚାକୁ ସାରି ସଡ଼ି ବୁଲିବା ?"

ଯେ ଯାହା ଘରକୁ ଗଲେ। କିନ୍ତୁ ନିଳୁ ଯାଇ ଚୂଲୀପଥର ଉପରେ ଶୋଇଲା। ସାଙ୍ଗୀମାନଙ୍କ ପାଇଁ ନାନା ଚିନ୍ତା, ଭାବନା ଓ ଆଶଙ୍କାରେ ମନଟା ଅବସନ୍ନ ହୋଇପଡ଼ିଥିଲା। ଉପରକୁ ଅନାଇ ଦେଖିଲା, ନିର୍ମଳ ଆକାଶରେ ଚନ୍ଦ୍ର ହସୁଛି। ତଳୁ କୁହୁଡ଼ି ପରି ଏକପ୍ରକାର ବାଷ୍ପ ଉଠି ଦିଗ୍‌ବଳୟ ପର୍ଯ୍ୟନ୍ତ ପୃଥିବୀ ମୁଖକୁ ମଳିନ କରି ରଖିଛି। ତାର ମନେହେଲା, ଯେପରି ଯେତେ ଆବିଳତା ସବୁ ଏହି ପୃଥିବୀରେ। ଉପରେ ସମସ୍ତ ପରିଷ୍କାର, ସମସ୍ତ ନିର୍ମଳ। କମେ ଅଭିଭୂତ ପରି ଚନ୍ଦ୍ରଆଡ଼କୁ ଅନାଇ ରହିଲା। ବୋଧହୁଏ ସହରର ଗଳିମାନଙ୍କରୁ ଚନ୍ଦ୍ରର ଏ ଦିଗନ୍ତବିସ୍ତାରୀ ଶୋଭା ଦେଖି ନ ଥିଲା। ସେତେବେଳକୁ ଦଶମୀର ଚନ୍ଦ୍ର ପଶ୍ଚିମରେ ମହାନଦୀ ଉପରକୁ ଢଳିପଡ଼ିଲାଣି। ଜୋସ୍ନାର ରଜତଧାରା ନଦୀବକ୍ଷରେ ବକ୍ରଭାବରେ ପଡ଼ି ଚକଚକ କରୁଛି। ନିଳୁ ମନେ ମନେ ଭାବିଲା, ଚନ୍ଦ୍ରର ଉତ୍ସମୁଖରୁ ଏହି ଯେ ଜ୍ୟୋତ୍ସ୍ନାମଦିରା ଉଚ୍ଛ୍ୱସିତ ବେଗରେ ଝରିପଡ଼ି ସ୍ଥାବର ଜଙ୍ଗମ ପରିପ୍ଳୁତ କରି ରଖିଛି, ବିଭୋର କରି ରଖିଛି, ମାନବ ଏ ମଧୁର ମାଦକତା ଉପେକ୍ଷା କରି କାହିଁକି ତରଳବହ୍ନି ଇଚ୍ଛା କରେ ? ଚନ୍ଦ୍ର ମହାନଦୀ ଆରପଟେ ପଶ୍ଚିମରେ ବୁଡ଼ିଗଲା। ନିଳୁ ଉଠି ଗାଁ ଭିତରକୁ ଗଲା।

ତହିଁ ଆରଦିନ ସକାଳେ ଉଠୁ ଉଠୁ ଡେରିହେଲା। ଉଠି ଠାଙ୍ଗରକୁ ସଙ୍ଗୀମାନଙ୍କୁ ଖୋଜିବାକୁ ଗଲା। କାହାରିକୁ ପାଇଲା ନାହିଁ। ଉପରଓଳି

# ସାମୟିକ

ଯେତେବେଳେ ଘରକୁ କଠକଳ୍କୁ ଫେରିଆସିଲା, ସାହିର ଲୋକେ ପଚାରିଲେ, “ଅରେ ନଲୁ, ନନ୍ଦ ରତନା ହେଉଥିବା ପସ୍ତ ତୋ ସାଙ୍ଗରେ ମଣ୍ଡାପଡା ଯାଇଥିଲେ ? ସେଠି ସେମାନଙ୍କୁ ଭୂଆଁ ଏମିତି ବୁଲେଇଲା ଯେ, କାହା ମୁଣ୍ଡ ଫାଟିଯାଇଛି, କାହା ହାତ ଭାଙ୍ଗି ଯାଇଛି, କାହା ଗୋଡ ଛେଚି ହୋଇଯାଇଛି ! ସମସ୍ତେ ଖଣ୍ଡିଆଖାବରା ହୋଇ ଫେରୁଛନ୍ତି ।”

ନଲୁ କହିଲା, “ଭୂଆଁ ତାଙ୍କୁ ମଣ୍ଡାପଡ଼ାରେ ପହଞ୍ଚିବା ଆଗରୁ ବକସିବଜାର ମଦଭାଟିରୁ ବୁଲେଇଥିଲା ।”



# ଚେହେରାର କରାମତି

'ରୂପ ଥିଲେ ଗୁଣ ଥାଏ' ବୋଲି ଲୋକେ ଯାହା କହନ୍ତି, ତାର ସତ୍ୟତା ବୋଧହୁଏ ଓଲଟା ରକମ ପ୍ରତିପାଦିତ ହୋଇଥିଲା ଚନ୍ଦ୍ରକାନ୍ତଠି । କାହିଁକି ନା, ରୂପ ଯଦିବା ତାର ଥିଲା କାର୍ତ୍ତିକ ପରି, ବୁଦ୍ଧିବୃତ୍ତି ସେହି ଅନୁପାତରେ ଥିଲା କମ, ଅର୍ଥାତ୍ ମୋଟା ରକମର । ତେବେ ଶୁଣାଯାଏ, ପୁରାଣବର୍ଣ୍ଣିତ କାର୍ତ୍ତିକ-ଙ୍କର ରୂପ ଥିଲା ବୀରଜନୋଚିତ ; ଚନ୍ଦ୍ରକାନ୍ତର ରୂପ କିନ୍ତୁ ଭିନ୍ନ ଜାତୀୟ—ନେସମା, ନରମ, ମାଈଆ ରକମର, ସାଧୁଭାଷାରେ କହିଲେ ସ୍ତ୍ରୀଜନସୁଲଭ ବୋଲି କହିବାକୁ ହେବ । ସ୍କୁଲ୍ କଲେଜରେ ପଢିବାବେଳେ ଯେତେବେଳେ ସେ ଅଳ୍ପବୟସର ବାଳକ ବା ଯୁବକ, କାରଣରେ ଅବା ଅକାରଣରେ ନିଜ ପ୍ରତି ଉଲ୍ଲେଖ ତାକୁ ଲଜ୍ଜାରେ ଅଭିଭୂତ କରେ, ଜଣାଏ ଭିତରେ ଦୃଢତାର ଅଭାବ, ନିଜ ଉପରେ ଆସ୍ଥା ନାହିଁ । ଏହି ଗୋଲଗାଲ ଚେହେରା ଆଉ ସୁନ୍ଦର ମୁହଁର ଜୋରରେ କି ସ୍କୁଲ, କି କଲେଜରେ କ୍ଲାସର ବର୍ଷିକିଆ ପରୀକ୍ଷାରେ ଯେ କେବେ କେବେ ଫେଲ ହୋଇ ବୁଢା ଶିକ୍ଷକମାନଙ୍କ ଅନୁଗ୍ରହରୁ ସେ ପାର-ହୋଇଯାଉଥିଲା, ସେଥିରୁ ସେ ରୀତିମତ ପରିଶ୍ରମ କରୁ ନ ଥିଲା ବୋଲି କେହି ଯେମନ୍ତ ନ ବୁଝନ୍ତୁ । ବୁଦ୍ଧିବୃତ୍ତି ଯଦିବା ଥିଲା କମ, ସେ କ୍ଷତି ସ୍କୁଲ କଲେଜରେ ତାର ରୂପର ଆଧିକ୍ୟ ପୂରଣ କରୁଥିଲା । କେବଳ ମାଟ୍ରିକ୍‌ରୁ ଆରମ୍ଭ କରି ବି. ଏ. ପର୍ଯ୍ୟନ୍ତ ପ୍ରତ୍ୟେକ ପରୀକ୍ଷାରେ ସେ ଯେ ଥରେ ଦୁଇ ଥର ଲେଖାଏ ଫେଲ ହୋଇଥିଲା, ତାହା ଇଉନିଭର୍ସିଟି ନାମକ ବସ୍ତୁଟି ସ୍କୁଲ କଲେଜର ଶିକ୍ଷକମାନଙ୍କ ପରି ବ୍ୟକ୍ତିବିଶେଷ ନ ଥିବାରୁ । ତାହା ନ ହୋଇ

ଥିଲେ ସେଟି ମଧ୍ଧ ତାର ରୁପ ଅନିବାର୍ଯ୍ୟ ହୋଇଥାନ୍ତା । ଯାହା ହେଉ,କୌଣସି କ୍ରମେ ସପ୍ଲିମେଣ୍ଟାରି ପରୀକ୍ଷାରେ ବି. ଏ. ପାସ୍‌କରି ଗଲା କଲିକତାକୁ ଲ ପଢିବାକୁ । ଯଦିବା ପ୍ରିଲିମିନାରି ଲ ପରୀକ୍ଷାରେ ବର୍ଷେ କାଳ କଟିଣ ପରିଶ୍ରମ କରି ଫେଇ ହେଲା, ବୋଧହୁଏ ସେହି ରୁପ ଦେଖି ଭାଗ୍ୟଦେବୀ ପ୍ରସନ୍ନ ହୋଇ ତାକୁ ଦେଲେ ଏକାବେଳେକେ ଡେପୋଟି ଗିରିକରି ।

ଗିରିକରି ହେଲା ଏହିପରି । ଚନ୍ଦ୍ରକାନ୍ତର ବାବା ୟୁସଫ ବାବୁ ଥିଲେ ଧର୍ମ ପ୍ରଚାରକ, ପାଦ୍ରୀମାନଙ୍କର ନିତାନ୍ତ ଅନୁଗତ ଏବଂ ଅନୁଗୃହୀତ । ତାହାର କାରଣ ହେଉଛି, କେବଳ ଧର୍ମପ୍ରଚାରକ ନ ହୋଇ କେତେଗୁଡ଼ିଏ ଧର୍ମ ସେ ସ୍ୱୀତିମତ ପାଳନ କରୁଥିଲେ, ଯାହା ସକାଶୁ ପାଦ୍ରୀସାହେବମାନଙ୍କର ଅନୁଗ୍ରହ-ଦାନ ଅବଶ୍ୟମ୍ଭାବୀ ହୋଇଥିଲା । ପ୍ରଭୁପରାୟଣ ହେବା, ଅର୍ଥାତ୍ ପାଦ୍ରୀମାନଙ୍କର ମନ ଯୋଗାଇ ଚଳିବା, ! ତାଙ୍କର ଥିଲା ନିତ୍ୟନୈମିତ୍ତିକ ଧର୍ମ ଅବା କର୍ମ, ଯଦିବା କେହି କେହି ହିଂସୁକ ଲୋକ ତାଙ୍କର ଏହି ଉଚ୍ଚ ମନୋଭାବର ମର୍ମ ବୁଝି ନ ପାରି ଯାକୁ ଖୋସାମତି କହିବାଦ୍ୱାରା କେବଳ ନିଜର ନୀଚତା ପ୍ରକାଶ କରୁଥିଲେ । ସେକାଳର ଅର୍ଥାତ୍ ପଚାଶ ବର୍ଷ ଆଗକାର ପାଦ୍ରୀସାହେବମାନେ ଆପଣାମାନଙ୍କୁ ଅଭିଭାବକଶୂନ୍ୟ ଖ୍ରୀଷ୍ଟିୟାନ ସମ୍ପ୍ରଦାୟର ମା ବାପ ବୋଲି ଭାବୁଥିଲେ । ୟୁସଫ ବାବୁ ଯେତେବେଳେ ପୁଅର ଡେପୋଟି ଗିରିକରି ପାଇଁ ପ୍ରତ୍ୟେକ୍ଷ ଏବଂ ପରୋକ୍ଷଭାବରେ କମିଶନର ସାହେବଙ୍କ ନିକଟରେ ସୁପାରିସ୍ କରିବାକୁ ପାଦ୍ରୀସାହେବମାନଙ୍କୁ ଧରିବସିଲେ, ସେମାନଙ୍କର ଏହି ପିତୃମାତୃ-ଭାବକୁ ଉତ୍କଟଭାବରେ ଉଦ୍ରେକ କରିଥିଲେ ।

ୟୁସଫ ବାବୁ ଚତୁର ଲୋକ । ଜାଣିଥିଲେ, ଅନେକ ସମୟରେ ଦାରୁରେ ଯାହା ହୁଏ ନାହିଁ, ସାମାନ୍ୟ ଦୂରରେ ତାହା ହୋଇଯାଏ । ସେଥିପାଇଁ କାମ ହାସଲ କରିବାକୁ ଦାରୁ ଦୁର କାହାକୁ ବାଦ ଦେଉ ନ ଥିଲେ, ସାନବଡ଼ର ତଫାତ୍ ରଖୁ ନ ଥିଲେ । ୟୁସଫ ବାବୁଙ୍କର ଦୂରଦର୍ଶିତା କହ ଅବା ଧର୍ମପ୍ରଚାରକ ହେବାର ଅତ୍ୟାବଶ୍ୟକ ଗୁଣ କୁହ,ସେ କାହାରଠାରୁ ଛୋଟ ନୁହନ୍ତି ନାହିଁ, ଏପରି କ

ନିଜର କୁଟୁମ୍ବମାନଙ୍କଠୁଁ ମଧ୍ୟ ନୁହେଁ; ବରଂ କୁଟୁମ୍ବ ଯେତେ ଦୂର ସମ୍ପର୍କର ହୁଅନ୍ତି ବା ଯେତେ ଦୂରରେ ଥାଆନ୍ତି ଏବଂ ସେମାନଙ୍କ ସହିତ ମିଳାମିଶା ଓ କାରବାର ଯେତେ କମ ହୁଏ, ଛିଣ୍ଡିବାର ବା ବିବାଦ ବିସମ୍ବାଦ କରିବାର ସୁଯୋଗ ମଧ୍ୟ ସେତିକି କମିଯାଏ । ଯୁଷଫ ବାବୁଙ୍କର ମନେ ପଡ଼ିଲା ତାଙ୍କ ସ୍ତ୍ରୀର ବହୁ ଦୂର ସମ୍ପର୍କୀୟ ଭଉଣୀ ଚନ୍ଦ୍ରମା କଥା । ଚନ୍ଦ୍ରମା ବିଧବା, ନର୍ସ କାମ କରେ ଡାକ୍ତରଖାନାରେ । ଭଲ ନର୍ସ ବୋଲି ନାମଡ଼ାକ ଏବଂ ଡାକ୍ତରସାହେବଙ୍କ ନେକନଜର ତା ଉପରେ । ଯୁଷଫ ବାବୁ ଶୁଣିଥିଲେ, ଥରେ କମିଶନର ସାହେବଙ୍କର ମେମସାହେବ ବେମାର ଥିବାବେଳେ କିଛିଦିନ ପାଇଁ ଚନ୍ଦ୍ରମା ତାଙ୍କର ଶୁଶ୍ରୂଷାରେ ନିଯୁକ୍ତ ଥିଲି । ସ୍ତ୍ରୀକୁ କହିଲେ, "ଥରେ ଯାଅନା ଚନ୍ଦ୍ରମାକୁ କହିବ, ଆମ କାଳିପାଇଁ କମିଶନର ସାହେବଙ୍କ ମେମଙ୍କୁ ଟିକେ ଧରିବ । ଯେତେ ହେଲେ ତ ସେ ତମ ଭଉଣୀ ।" ସ୍ତ୍ରୀ ମୁହଁ ବୁଲେଇ କହିଲା, "ମଲି ମୋର, ଇଏ ଅଲଜ୍ଆ ନେଖାରେ ବାଲ୍ଆ ବନ୍ଧୁ । ମୁଁ ସିବି ତା କତିକୁ? ସେ ଛୋଟ ଲୋକଟା ମୋତେ ଯୋଉ ଯୋଉ କଥାମାନ ଶୁଣେଇଛି ? ଯେବେ ମା ପେଟର ଭଉଣୀ ହୋଇଥାନ୍ତା ତ ତା ମୁହଁ ଭାଙ୍ଗିଦେଇଥାନ୍ତି ।" ସ୍ୱାମୀ କହିଲେ, "ସେ କଜିଆ ତ ଆସି ଦଶ ବରଷର କଥା, କଣ ଏ ପର୍ଯ୍ୟନ୍ତ ତା ମନରେ ଅଛି ? ମୋ ସାଙ୍ଗରେ ଅନେକ ଥର ବାଟରେ ଦେଖା ହୁଏ, ହସି ହସି ପଚାରେ—ନନା, ଅପା ଭଲ ଅଛି ? ଆଉ ଦେଖ, ଦଶ ବରଷର କଜିଆକୁ କଣ ଗଣ୍ଠି କରି ମନରେ ରଖିବା ଖ୍ରୀଷ୍ଟିୟାନର ଉଚିତ ?" ସ୍ତ୍ରୀ ନାକ ହଲେଇ ଉତ୍ତର ଦେଲା, "ରଖ ରଖ ତମ ଧରମ ପୁଟୁଳି ବାନ୍ଧି ଶିକାରେ ଝୁଲେଇ; ମୋତେ ତମ ଧର୍ମ ଦେଖି ଦେଖି ବାନ୍ତି ମାଡ଼ିଲାଣି । ତମ ଗରଜ ପଡ଼ିଛି ତ ନିଜେ ଯାଅ ।" ଅଗତ୍ୟା ଅନ୍ୟ ଉପାୟ ନ ଦେଖି ଯୁଷଫ ବାବୁ ନିଜେ ଯାଇ ଚନ୍ଦ୍ରମାକୁ ଧରିଲେ ଏବଂ ଚନ୍ଦ୍ରମା ପୁତୁରା ଚନ୍ଦ୍ରକାନ୍ତକୁ ନେଇ ମେମ ସାହେବଙ୍କୁ ଦେଖା କରାଇ ଆଣିଲା ।

ସେତେବେଳେ ଉପୋଷି ବ୍ୟକ୍ତିରେ ଲୋକ ନିଯୁକ୍ତି ବିଷୟରେ କମିଶନର ଏକରକମ ସର୍ବେସର୍ବା । ଉପରୁ ପାଦ୍ରୀଙ୍କର ସୁପ ଏବଂ ତଳୁ

ଚନ୍ଦ୍ରମାର ପତ୍ନୀଙ୍କ ରୂପ । ସାହେବ ଖୁସି ହୋଇଗଲେ ଏବଂ ପ୍ରାର୍ଥୀଙ୍କ ମଧ୍ୟରେ ଚନ୍ଦ୍ରକାନ୍ତର ଅନନ୍ୟପ୍ରତିଦ୍ୱନ୍ଦ୍ୱୀ ଚେହେରାଟି ଦେଖି ତା ଆଡ଼କୁ ଆକୃଷ୍ଟ ହେଲେ । ଫଳରେ, ଚନ୍ଦ୍ରକାନ୍ତ ହେଲା ଡେପୋଟି ।

ଧର୍ମ ଆଖିରେ ସମସ୍ତେ ସମାନ; କିନ୍ତୁ ଏହା ବୋଲି ଯେଉଁମାନେ ଧର୍ମ ପ୍ରଚାର କରନ୍ତି, ସେମାନଙ୍କ ମଧ୍ୟରେ ଯେ ଗୋଟା କଳାର ତଫାତ୍ ରହିବ ନାହିଁ, କି କର୍ତ୍ତା ଆଉ କର୍ମର ସମ୍ବନ୍ଧ ରହିବ ନାହିଁ, ଏପରି କୌଣସି କଥା ନାହିଁ । ଏହି ଶ୍ରେଣୀବିଭାଗ ଫଳରୁ ମୁଷପ ବାବୁ ଯେଉଁ ଶ୍ରେଣୀର ପ୍ରଚାରକ, ସେମାନଙ୍କର ଦରମା ପଚାଶ ବା ପଞ୍ଚାଶ ଟଙ୍କାରୁ ବେଶି ନ ହେଉଥିଲେ ସୁଦ୍ଧା ଏହି ସାମାନ୍ୟ ଆୟରେ ସେମାନଙ୍କ ମଧ୍ୟରୁ ଅନେକଙ୍କ ଅବସ୍ଥା ସ୍ୱଚ୍ଛଳ ଥିଲା । ଆଶ୍ଚର୍ଯ୍ୟ ହେବାର କିଛି କାରଣ ନାହିଁ । ପ୍ରଚାରକର କାର୍ଯ୍ୟ ଧର୍ମକାର୍ଯ୍ୟ, ଈଶ୍ୱରଙ୍କର ଆଶୀର୍ବାଦ ତା ଉପରେ । ତେବେ ଯେଉଁମାନଙ୍କର ମତଗତ ଧର୍ମ ଆଡ଼କୁ ନାହିଁ, ଏପରି କେତେକ ଅର୍ବାଚୀନ କହନ୍ତି ଯେ, ଧର୍ମପ୍ରଚାରକମାନଙ୍କର ସବୁଠାରୁ ବେଶି ପରିଶ୍ରମର କାର୍ଯ୍ୟ ହେଉଛି ସକାଳେ ଆଉ ରାତିରେ ହାତ ଧୋଇ ଭାତ ଖାଇବା; କିନ୍ତୁ ଏ କଥାଟା ଯେ ସତ୍ୟ ନୁହେଁ, ନିତାନ୍ତ ଅପବାଦର କଥା, ଏହା ଜୋର କରି କୁହାଯାଇପାରେ । ପ୍ରଚାରକମାନେ ଯେଉଁ ଦିନ ବେଶି କାର୍ଯ୍ୟ କରନ୍ତି, ସେହି ଦିନ, ଅର୍ଥାତ୍ ରବିବାର ଦିନ ଅନ୍ୟମାନେ ବିଶ୍ରାମ କରନ୍ତି ଏବଂ ହପ୍ତାର ଆଉ ଛଅ ଦିନ କୁକୁଡ଼ା ମେଣ୍ଢା ବତକ ଗୋରୁ ଗାଈଙ୍କର ପରିଚର୍ଯ୍ୟା କରିବା, ବାରିଘରେ ଶାଗ ମୂଳ କରିବା ଏବଂ ଏ ନାଳ ସେ ଜୋରରୁ ବନଶୀ ଅଗରେ ମାଛ ଶିକାର କରି ତରକାରି ଖର୍ଚ୍ଚ କମାଇବା ପ୍ରଭୃତି କାର୍ଯ୍ୟ କମ ଧୈର୍ଯ୍ୟ ଏବଂ ପରିଶ୍ରମର କଥା ନୁହେଁ । ମୁଷପ ବାବୁଙ୍କର ଦରମା ଯଦିବା ପଚାଶ ପଞ୍ଚାଶରୁ ବେଶି ନ ଥିଲା, ଘରଦୁଆର କରି ପିଲାଟିକୁ ଲେଖାପଢ଼ି ଶିଖେଇ, ଏପରି କି ଡେକାରିତ କାରବାରରେ ଖଟେଇବା ପାଇଁ କିଛି ସଞ୍ଚୟ ମଧ୍ୟ କରିପାରିଥିଲେ ।

ଅବସ୍ଥା ଏକରକମ ସ୍ୱଚ୍ଛଳ ଥିବାରୁ ଏବଂ ଚନ୍ଦ୍ରକାନ୍ତ ବାପମାର ଗୋଟିଏ ପୁଅ ହେବାରୁ ଯେତେବେଳେ ସେ ବି. ଏ. ପାସ୍ କଲା ମୁଷପ

ବାବୁ ମନେ କଲେ, ପୁଅ ବଡ଼ ହେବା ସଙ୍ଗେ ଯଥେଷ୍ଟ ଯୋଗ୍ୟତା ଅର୍ଜନ କରୁଛି । ଜନ୍ମ ମରଣ ବିବାହ ବିଧାତାଙ୍କ ହାତରେ । ଅବଶ୍ୟ ଧର୍ମ ପ୍ରଚାରକ ହେବାରୁ ପୁଅକୁ ଯେପରି ଗୋଟିଏ ଉପଯୁକ୍ତ ପାତ୍ରୀ ମିଳିବ, ସେଥିପାଇଁ ପ୍ରଭୁଙ୍କ ନିକଟରେ ପ୍ରାର୍ଥନା ମଧ୍ୟ କରୁଥିଲେ । କିନ୍ତୁ ପାତ୍ରୀ ସନ୍ଧାନର ଭାର କୌଣସି ଏଲ୍‌ଏଜର ହାତରେ ସମର୍ପଣ ନ କରି, ଏପରି କି ନିଜ ସ୍ତ୍ରୀର ବିଚାରବୁଦ୍ଧି ଏବଂ ମନୋନୟନ ଉପରେ ନିର୍ଭର ନ କରି ଆଦର୍ଶ ପିତା ପରି ପାତ୍ରୀ ବାଛିବାଠାରୁ ପକା ଜବାବ ଦେବା ନେବା ପର୍ଯ୍ୟନ୍ତ ବିବାହ ସମ୍ପର୍କୀୟ ଯାବତ କାର୍ଯ୍ୟର ଭାର, କର୍ତ୍ତବ୍ୟବୋଧରେ ନିଜ କାନ୍ଧ ଉପରେ ଗ୍ରହଣ କରୁଥିଲେ ।

ପ୍ରଥମେ ତାଙ୍କ ନଜର ପଡ଼ିଲା ଖ୍ରୀଷ୍ଟିୟାନ ସମ୍ପ୍ରଦାୟର ତଥାକଥିତ ଖାନଦାନ୍ ଦାସ ପରିବାର ଉପରେ । ବିଶ୍ୱମ୍ଭର ଦାସ, ଖ୍ରୀଷ୍ଟିୟାନ ସମ୍ପ୍ରଦାୟ ଯେଉଁ ନିରସ୍ତପାଦପଦେଶ, ତହିଁରେ ଏରଣ୍ଡ ବୃକ୍ଷ, ଅର୍ଥାତ୍ ଜମିଭୂମିଲେଶଶୂନ୍ୟ ଖ୍ରୀଷ୍ଟିୟାନମାନଙ୍କ ମଧ୍ୟରେ ଜମିଦାରର ଖ୍ୟାତି ଅର୍ଜନ କରିଥିଲେ । କଟକ ଜିଲ୍ଲା ନରସିଂହପୁର, ଜେନପୁର ଯେଉଁ ଦୁଇଖଣ୍ଡି ମଉଜା ବାଖାରପୁର ଜମିଦାରୀର ଚଉଙ୍ଗିଭୁକ୍ତ, ତାର ମକଦ୍ଦମ ଥିଲେ ବିଶ୍ୱମ୍ଭର ଦାସେ । ସଦର ଜମା ଜମିଦାରଙ୍କ କଚେରୀରେ ପଇଠ କରିବାକୁ ହୁଏ ସାଲିଆନା ଟ୬୦୦୯, ନିଜର ଆମଦାନୀ ଏଣୁ ତେଣୁ କରି ଛଅଶ ଟଙ୍କା, ଅର୍ଥାତ୍ ମାସକୁ ଟଙ୍କା ପଚାଶ । ତା ଛଡ଼ା ଧାନ ଜମି ଜମା ଏବଂ ସହରରେ ଥିବା କେତେକ ଭଡ଼ାଘରୁ ଯାହା ଆୟ ହୁଏ, ସେ ସବୁ ମିଶେଇଲେ ମାସକୁ ପ୍ରାୟ ଟଙ୍କା ଦୁଇ ଶ ପଡ଼େ । ସନ୍ତାନସନ୍ତତିଙ୍କ ଭିତରେ ଗୋଟିଏ ମାତ୍ର ଝିଅ । ଇତ୍ୟାଦି ସବୁ କାରଣରୁ ଦାସଙ୍କ ଘରେ ବନ୍ଧୁ ବାନ୍ଧିବା ମୁଷଫବାବୁଙ୍କ ପକ୍ଷରେ ଲୋଭନୀୟ ହୋଇଉଠିଲା । ମୁଷଫବାବୁଙ୍କ ଆଶା କେଜାଣି ଅବା ଚରିତାର୍ଥ ହୋଇଥାନ୍ତା ଯଦି ସେ ପୁଅର ବି. ଏ ପାଶ କରିବାର ଦୁଇ ତିନି ବର୍ଷ ପରେ ଅର୍ଥାତ୍ ଉପୋଷ୍ଟି ବୃଳକୀ ହେବା ପରେ ଆଉ ଥରେ ବିବାହ ପ୍ରସ୍ତାବଟା ଦାସଙ୍କ ନିକଟରେ କରିଥାନ୍ତେ । ଚତୁରତାରେ ଦାସେ ମଧ୍ୟ ମୁଷଫବାବୁଙ୍କଠାରୁ କିଛି କମ ନ ଥିଲେ । ପ୍ରସ୍ତାବର ଉତ୍ତରରେ ହାଁ

କଲେ ନାହିଁ କି ନା କଲେ ନାହିଁ । କହିଲେ,"ଚନ୍ଦ୍ରକାନ୍ତ ତ ଏଇ ସେଦିନ ପାସ୍ କଲା, ପୁଣି ଓକାଲତି ପଢୁଛି । ସୁକଣ୍ଠା ବାକଣ୍ଠା କରୁ, ତରତର କାହିଁକି ? ଆଉ ମୋର ଝିଅର ବୟସ ବି ତ ବେଶି ନୁହେଁ, ମୋଟେ ସେଦିନ ପନ୍ଦରରେ ଗୋଡ଼ ଦେଇଛି ।" କେବଳ ଅପେକ୍ଷା କରିବାକୁ କହୁଥିଲେ ଯୁଷଫବାବୁ କିଛି ମନେକର ନ ଥାନ୍ତେ; କିନ୍ତୁ ଦାସଙ୍କ ଝିଅକୁ ବିଭାହେବା ସକାଶେ ତାଙ୍କ ପୁଅର କେବଳ ବି. ଏ. ପାସ୍ଟା ଯେ ପର୍ଯ୍ୟାପ୍ତ ନୁହେଁ, ଏହାଇ ତାଙ୍କୁ ଭୟଙ୍କର ଅପମାନଜନକ ବୋଧ ହେଲା । ସେଥିପାଇଁ ପୁଅ ଯେତେବେଳେ ଡିପୋଟି ହେଲା, ଯୁଷଫ ବାବୁ ଆଉ ସେ ଆଡ଼କୁ ମୁହଁଲେ ନାହିଁ ।

ପୁଅର ଡିପୋଟି କାମ ଓ ପଦୋନ୍ନତିର ସଙ୍ଗେ ସଙ୍ଗେ ବାପଙ୍କ ମାନ ଅପମାନର ଜ୍ଞାନ ମଧ୍ୟ ବଢିଗଲା । ଓଡିଆ ଖ୍ରୀଷ୍ଟିୟାନ କୁଳରେ ପୁଅ ଲାଗି କନ୍ୟା ତାଙ୍କ ଆଖିକୁ ଆଉ ଦିଶିଲା ନାହିଁ । ଓଡିଆ ଝିଅ ରୂପରେ ଅବା ଗୁଣରେ ଯୋଗ୍ୟ ହେଲେ କ'ଣ ହେବ, ପଦମର୍ଯ୍ୟାଦାର ଅନୁପାତ ଓଡିଆ ଘରେ ମିଳିଲା ନାହିଁ । ଅତଏବ ଆଖି ପକେଇଲେ ବଙ୍ଗଳା ଆଡ଼ା ଉପରେ ।

ମଥୁରା ବାବୁ କଲିକତାରେ ଜଣେ ଲବ୍ଧପ୍ରତିଷ୍ଠ ଖ୍ରୀଷ୍ଟିୟାନ ଓକିଲ । ଘରେ ଟଙ୍କା ପଇସା ବଢିବା ସଙ୍ଗେ ସଙ୍ଗେ କନ୍ୟାରତ୍ନଙ୍କର ସଂଖ୍ୟା ମଧ୍ୟ ବଢି-ଥିଲା । ଝିଅ ବିକାଏ ରୂପ ଥିଲେ ନାଇ ତ ପଇସାର ଜୋର ଥିଲେ । ପଇସାର ଜୋର ଯଦିବା କିଛି ଥିଲା, ମଥୁରା ବାବୁଙ୍କର ଝିଅମାନଙ୍କର ବିବାହର ମସ୍ତ-ବଡ଼ ପ୍ରତିବନ୍ଧକ ହୋଇଥିଲା ସେମାନଙ୍କର ରୂପର ଅଭାବ । ଝିଅ ତ ଥିଲେ ଅନେକ, ତା ଉପରେ ପୁଣି ବଡ଼ଝିଅ ନର୍ମଦା ବହୁଦିନରୁ ବିବାହଯୋଗ୍ୟା । ଦିହର ରଙ୍ଗ ଯେ ଲୋକେ କହନ୍ତି ହାଣ୍ଡିକଳା ପରି, ସେ କଥା ମିଛ । କିନ୍ତୁ ତାଠୁ ଟିକେ ଧଳା ପୋଚ୍ଛା କମ । ତାର ସଙ୍ଗୀମାନେ ଯଦିବା ତାକୁ 'ନର୍ମ' 'ନର୍ମ' ବୋଲି ତା ଆଗରେ ଡ଼ାକନ୍ତି, ତା ପଛରେ ଆପଣାମାନଙ୍କ ଭିତରେ ତାର ନାମ ଦେଇଥିଲେ 'ତାଲବ୍ୟ ଶ', ଯେହେତୁ ସେମାନଙ୍କ ମତରେ ତାର ମୁହଁ ଏବଂ ବଙ୍ଗଳା ତାଲବ୍ୟ ଶ ଅକ୍ଷର ମଧ୍ୟରେ ତଫାତ୍ ଖୁବ୍ କମ । ତେବେ

ମାନିବାକୁ ହେବ, ସ୍ୱାସ୍ଥ୍ୟଟି ଥିଲା ନିଖୁନ୍ତ ଏବଂ ଦେହର ଗଠଣ ବୁଝିଲା ପରି । ଶରୀର ଅନୁପାତରେ ବକ୍ଷସ୍ଥଳର ବିପୁଳତା ଟିକେ ବେଶି ରକମ ଆଖିରେ ପଡେ । ଚେଢ଼େଶ୍ୱର କସ୍ମେଟ ଅବଶ୍ୟ କେତେକ ପରିମାଣରେ ହାଲଫ୍ୟାସନର ବ୍ଲାଉଜ ଓ ଶାଢ଼ୀ ପିନ୍ଧିବା ସକାଶୁ । ନର୍ମଦା ସବୁବିଷୟରେ ଚଟପଟ୍ ବାହାରକୁ ବାହା-ରିଲେ । ଘର ଭିତରର କାମ ବେଳେ ମା କି ଚାକରବାକରଙ୍କୁ ସାହାଯ୍ୟ କରିବା ଅପେକ୍ଷା ଆରାମଚଉକି ଅବା ଖାଉଟ ଉପରେ ଅଧିକାଂଶ ସମୟ କ୍ଷେପଣ କରେ ନଭେଲ ମ୍ୟାଗାଜିନ୍ ପଢିବାରେ । କିନ୍ତୁ ଘରେ କି ବାହାରେ ବନ୍ଧୁମହଲରେ ପାଟିଗାଟି ହେଲେ ଖବା ଆଣିବା ଓ ଚର୍ଚ୍ଚା କରିବା ବିଷୟରେ ନର୍ମଦା ନ ହେଲେ ଚଳେ ନାହିଁ । ଚାନ୍ଦା ଉଠାଇବା, ଟିକଟ ବିକି କରିବା ପ୍ରଭୃତି ଲୋକହିତକର କାର୍ଯ୍ୟରେ ତାର ଯୋଡ଼ା ମିଳିବା ଦୁଷ୍କର । ସମ୍ପ୍ରତି ବେଥୁନ କଲେଜରେ ତିନିବର୍ଷ ପର୍ଯ୍ୟନ୍ତ ଆଇ-ଏ ଫେଲ ହୋଇ କେତେକଟା ୟୁନିଭର୍ସିଟି ଉପରେ ରାଗକରି ଏବଂ କେତେକଟା ମଥୁର ବାବୁଙ୍କର ବାଧ୍ୟବାଧକତାରେ ଘରେ ରହିଛି । ଏହିପରି ସମୟରେ ଜଣେ ଉଭୟ ପକ୍ଷର ପରିଚିତ ଲୋକଙ୍କର ମଧ୍ୟସ୍ଥତାରେ ଚନ୍ଦ୍ରକାନ୍ତ ସହିତ ବିବାହର କଥାବାର୍ତ୍ତା ଆରମ୍ଭ ହେଲା । ଯଦିବା ଏହା ପକ୍କା ଜବାବ ନୁହେଁ, କେବଳ ପ୍ରସ୍ତାବନା, ବାପ ମାଙ୍କର ମନେ ହେଲା ହାତରେ ଆକାଶର ଚାନ୍ଦ ପାଇଲେ । ମନରେ ଖାଲି ଯା ଡ଼ର, ଯଦି ଯୁଷଫ ବାବୁ ଝିଅ ଦେଖିଲା ପରେ ଫିଟିକି ଯାଆନ୍ତି ।

ଯୁଷଫବାବୁଙ୍କର ମଥୁରବାବୁଙ୍କ ଘରକୁ ଆସିବାର ଦୁଇ ଦିନ ଆଗରୁ ନର୍ମଦା ତା ତଳ ଭଉଣୀ ପ୍ରମଦାଠୁ ଶୁଣିଲା, ତା ବିଭାଘର ବିଷୟରେ ଯୋଗାଡ଼ ଚାଲିଛି । ପ୍ରମଦାକୁ କହିଲା, "ଯା ମାକୁ କହିବୁ, ମୋର ବାହା ହୋଇ ହବାକୁ ଇଚ୍ଛା ନାହିଁ । ତୁମ ଭିତରୁ କାହାରି ପାଇଁ ଯୋଗାଡ଼ କରିବ ।" ମା ଆସି କହିଲା, "ହେଇଲୋ ନମ, କାଲି ଛାଡ଼ି ପରଦିନ ଚନ୍ଦ୍ରକାନ୍ତର ବାବା ଆସିବେ ତୋତେ ଦେଖିବାକୁ, ଆଉ ତୁ ଏ କଣ କହୁଚୁ ? ଆମେ ବାପାମା ତମ ପାଇଁ ଭାବି ଭାବି ହାଡ଼କଣ୍ଟା ହେଉଥାଉ, ଆଉ ତୁମେ ସବୁ ବସି ନିଜ ଗୋଡ଼କୁ ନିଜେ ହାଣୁ-ଥାଅ ।" ନମ କହିଲା, "ବାହାଘର ହେବ ମୋର, ଆଉ ତମେ କି ବାବା ଏ

ବିଷୟରେ ମୋର ମତ ନେବା ଆବଶ୍ୟକ ବୋଧ କଲ ନାହିଁ ?" ମା କହିଲା, 'ତୋର ଯେ ଅମତ କାହିଁକି ହେବ, ସେ କଥା ତ ମୁଁ ବୁଝିପାରୁ ନାହିଁ । ଚନ୍ଦ୍ରକାନ୍ତ ଡିପୋଟି ମେଜେଷ୍ଟର, ତାଠାରୁ ଅଧିକ ବଡ଼ିଆ ବର ତୋ ପାଇଁ ଆମେ କୋଉଠୁ ଯୋଗାଡ଼ କରିବା ?' ଝିଅ କହିଲା, 'କଣ ଖାଲି ଡିପୋଟି ହେଲେ ହେଲା ? ମୁଁ ସେ ଓଡ଼ିଆ ପୋଡ଼ଆଙ୍କୁ ବାହା ହେବି ନାହିଁ କି ଗାଁଉଲୀ ଗାଁରେ ଯାଇ ରହି ପାରିବି ନାହିଁ ।' ମା କହିଲା, 'କଣ କହିଲୁ ? ଖାଲି ଡିପୋଟି ହେଲେ ହେଲା ? ଆଉ କଣ ହେଲେ ହେବ, ମୁଁ ଟିକେ ଶୁଣେ ? ଆଉ କଠିକି ହେଲା ଗାଁଉଲୀ ଗାଁ ? କଣ ବରିଶାଲ, ନଦିୟା, କୃଷ୍ଣନଗର ବଡ଼ ବଡ଼ ସହର ? ଆଉ ଓଡ଼ିଆ ବୋଲି ନାକ ଟେକୁଛୁ ? ଏଠି ନ ହେଲେ କୋଉ ବାଙ୍ଗାଲ କି ମିଳିବେ କି ନାହିଁ, ଜଣା ନାହିଁ । ତେବେ ବି, ମୁଁ ଶୁଣିଛି ପିଲାଟି ଦେଖିବାକୁ ମନ୍ଦ ନୁହେଁ । ଦେଖ, ପରଦିନ ଯୁଷଫ ବାବୁ ଆସିବେ, ତୋର ଚାଲିଚଳଣକୁ ଭଲ କରି ଜଗିଥା ।' ନର୍ମଦା ପଚାରିଲା, 'କଣ ଚାଲିବ ନାହିଁ ନା କଣ ?' ମା ଉତ୍ତର ଦେଲା, 'ବରଂ ମୋ ବିଚାରରେ ତୋର ସେତେବେଳେ ନ ଚାଲିବାଇ ଭଲ ।'

ଯୁଷଫବାବୁ ଯଥାସମୟରେ ପୁଅର ଭାବି-ଶଶୁର ଘରକୁ ଆସି ଦେଖାଶୁଣା କରିଗଲେ । ତାଙ୍କର ଆଦର ଅଭ୍ୟର୍ଥନା ସମୁଦ୍ରଙ୍କ ଘରେ ଷୋଡ଼ଶ ଉପଚାରରେ ହୋଇଥିଲା । ଘରବାଡ଼ି ମଠର ଗାଡ଼ି ସାହେବି କାୟେଦା ଚାଲିଚଳଣ ଇତ୍ୟାଦି ଦେଖି ଡିପୋଟି ପୁଅର ଯୋଗ୍ୟ ଶ୍ୱଶୁର ଘର ବୋଲି ଯୁଷଫବାବୁଙ୍କର ମନକୁ ପାଇଲା । ତେବେ, ନର୍ମଦାର ରୂପ ଏବଂ ବୟସ ଦେଖି ଭୟ ହେଲା, କେଜାଣି ପୁଅର ଏବା ପସନ୍ଦ ନ ହେବ । ସେଥିପାଇଁ ସ୍ଥିର ଜବାବ ନ ଦେଇ କହିଲେ, 'ପୁଅ ନିଜେ ଆସି ଦେଖିଗଲେ ପୂରା ଜବାବ ଦେବି ।' ଘରେ ଆସି ସ୍ତ୍ରୀକୁ କହିଲେ ଯେ, ସବୁ ବିଷୟ ଦେଖି ଏବଂ ଭବିଷ୍ୟତକୁ ଆଖି ରଖି ସେ ବିଚାରୁଛନ୍ତି ମଥୁରବାବୁଙ୍କ ଘରେ ଚନ୍ଦ୍ରକାନ୍ତର ବିଭା ହେବା ଲାଭଜନକ । ସ୍ତ୍ରୀ କହିଲେ, 'ମୁଁ ଶୁଣିଛି ନର୍ମଦାର ରଙ୍ଗ କଳା ଏବଂ ବୟସରେ ସେ ଚନ୍ଦ୍ରଠୁ ବଡ଼ ।' ସ୍ୱାମୀ ଉତ୍ତର ଦେଲେ, 'ରଙ୍ଗ ନେଇ କଣ ଧୋଇ ଖାଇବ ? ତମ ପୁଅର ଯାହା

ରଙ୍ଗ ଏବଂ ରେହେନା, ତାହା ଉଭୟଙ୍କ ପକ୍ଷରେ ଯଥେଷ୍ଟ । ପିଲାଟି ଗୁଣବତୀ, ଆଦବ କାଇଦା ଦୁରସ୍ତ; ବଡ଼ ଲୋକର ଉପଯୁକ୍ତ ଘରଣୀ ହେବ । ଆଉ ବୟସ ବା କଣ ବେଶି, ଏଇ ଉଣେଇଶ୍ ବର୍ଷ । ତେବେ ମୋର ମତ ମୁଁ କହିଲି । ମୁଁ କିଛି ପକ୍କା ଜବାବ ଦେଇ ନାହିଁ, ପୁଅ ଯାଇଁ ଦେଖିଲେ ଯାହା ହେବ ।'

ପୁଅ ଯାଇ ଦେଖାଶୁଣା କରି କୌଣସି ମଧ୍ୟସ୍ଥ ବନ୍ଧୁର ସାହାଯ୍ୟରେ ଜଣାଇ ଦେଲା ଯେ, ସେ ବାପର ବାଧ୍ୟ ପୁତ୍ର; ବାପାଙ୍କର ଯେଉଁଟି ମତ, ସେଟି ତାର ଅମତ ହେବାର କୌଣସି କାରଣ ନାହିଁ । ଅସଲ କଥାଟା ହେଉଛି, ଯେଉଁ ସବୁ କାରଣରୁ ମଥୁର ବାବୁଙ୍କ ଘରେ ବନ୍ଧୁ ବାନ୍ଧବ ଯୁସଫ୍ ବାବୁଙ୍କୁ ବାଞ୍ଛନୀୟ ବୋଲି ମନେ ହେଲା, ସେହି ସବୁ କାରଣ ମଧ୍ୟ ପୁଅକୁ ଉକ୍ତ ବିବାହରେ ସ୍ୱୀକୃତ କରାଇଲା । ଶ୍ୱଶୁର ଘରର ବଡ଼ଲୋକି ଆବହାଉଆ ବିଶେଷ କରି ଚନ୍ଦ୍ରକାନ୍ତର ମନକୁ ପାଇଲା । ବାହା କରିବା ପାଇଁ ନର୍ମଦା ମନରେ ଯାହା କିଛି କିନ୍ତୁ କିମ୍ବା ଦ୍ୱନ୍ଦ୍ୱ ଦ୍ୱିଧା ଥିଲା, ଚନ୍ଦ୍ରକାନ୍ତ ରୂପର ଜ୍ୟୋତିରେ ସେ ସବୁ ପାହାନ୍ତି କୁହୁଡି ପରି ମନରୁ ଉଭେଇଗଲା । ତଳ ଭଉଣୀ ପ୍ରମଦା ନର୍ମଦାକୁ ଏକୁଟିଆ ପାଇ ପଚାରିଲା, "ନମ ନାନୀ, କାନ୍ତ ଭାଇଙ୍କର ରେହେନା ମନକୁ ପାଉଛି, ନା ଆମ କାହାରି ପାଇଁ ଯୋଗାଡ଼ କରିବାକୁ ମାକୁ କହିବି ?" ଉତ୍ତରରେ ନର୍ମଦା କେବଳ ସାନ ଭଉଣୀର ଗାଲ ଚିପିଦେଲା । କହିଲା, 'କିନ୍ତୁ ତୋ କାନ୍ତ ଭାଇଟି ବଡ଼ ଲାଜୁକ, ବେଶି କଥାବାର୍ତ୍ତା ନାହିଁ ।' ପ୍ରମଦା କହିଲା, 'ଭୟ କଣ, ବାହା ହୋଇ ସାରିଲେ କଥାବାର୍ତ୍ତା କହିବାକୁ ବହୁତ ସମୟ ମିଳିବ ।'

ବେଶ୍ ଆଡ଼ମ୍ବର କରି ମଥୁର ବାବୁ ଝିଅର ବାହା ଦେଲେ । ବିଭାଘରକୁ କଲିକତା ସହରର ଅନେକ ମାନ୍ୟଗଣ୍ୟ ବ୍ୟକ୍ତିଙ୍କର ଆଗମନ ହୋଇଥିଲା । ବାହାଘର ଦିନର ଯାବତୀୟ କାର୍ଯ୍ୟ ଅର୍ଥାତ୍ ଲୁଗାପଟା, ଗହଣାପତର, ଭୋଜିଭାତ ଇତ୍ୟାଦି ସମସ୍ତ ବିଷୟ ଯୁସଫ ବାବୁ ଏବଂ ଚନ୍ଦ୍ରକାନ୍ତର ମନମୁତା-

ବନ୍ଦ ହୋଇଥିଲା । କେବଳ ଜଣେ ଲୋକ ବଡ଼ଲୋକ ଘରର ଢଙ୍ଗ ଦେଖି ଟିକେ ଉଡ଼ିକି ଯାଇଥିଲା—ସେ ହେଉଛି ଚନ୍ଦ୍ରକାନ୍ତର ମା । ବୁଢ଼ୀ ପୁରୁଣାକାଳିଆ ଧରଣରେ ବଢ଼ି ଆସିଛି । କେତେକେ ଏ ଆଧୁନିକ ରୀତିନୀତିକୁ ନିର୍ବିବାଦରେ ସହ୍ୟ କରୁଛି—ବିଶେଷ କରି ଯେତେବେଳେ ନୂତନ ଚାଞ୍ଚଲ୍ୟ ଦେଖାଇ ପୁରାତନର ଦାବୀ ଉପେକ୍ଷା କରି ଚାଲେ । ପୁରାତନକୁ ସାଙ୍ଗରେ ନେଇ ଚାଲିଲାବେଳେ ନୂତନ ଯେବେ ଟିକେ ଆଗ ବଢ଼ି ଚାଲିବ, ସେଥିରେ ପୁରାତନର ଯେ ବିଶେଷ କିଛି ଆପତ୍ତି ହେବ, ତାହା ନୁହେଁ । ବିବାଦର ସୃଷ୍ଟି ହୁଏ, ଯେତେବେଳେ ନୂତନ ପୁରାତନର ସଙ୍ଗ ଏକାବେଳକେ ପରିତ୍ୟାଗ କରେ, ତା ସାଙ୍ଗରେ ଚାଲିବା ଅପମାନଜନକ ମନେ କରେ । କନ୍ୟା ଯେତେବେଳେ ଗୀର୍ଜାଘର ଦୁଆର ମୁହଁରେ ଗାଡ଼ିରୁ ଓହ୍ଲାଇଲା ଓ ବିବାହ ବାନ୍ଧି ପାଳିବା ପାଇଁ ଗୀର୍ଜାଘର ଭିତରକୁ ଚାଲିଲା ବାପର ହାତ ଧରି ବେଦୀ ଆଡ଼କୁ, ସେତିକି ବେଳୁ କନ୍ୟାର ବେଶଭୂଷା ଓ ଚାଲିଚଳଣ ଦେଖି କାନ୍ତମାଆର ମନ ପିତା ହୋଇଗଲା । ତାର ମନେହେଲା ଯେପରି ଗୋଟାଏ ବଡ଼ ପ୍ରଜାପତି ତାର ଛାପଛାପକିଆ ପର ଝାଇଁଟା ଫରଫର କରି ବେଦୀ ଆଡ଼କୁ ଉଡ଼ିଯାଉଛି । ଯୋଉଟି ସେ ଦେଖିବ ବୋଲି ମନେ କରିଥିଲା, ବିବାହ ସଭାର ଚାରି ଛଅ ଶ ଯୋଡ଼ା ଆଖିର ପଲକବିହୀନ ଅଭ୍ୟର୍ଥନାରେ ବିଡ଼ମ୍ବିତ ହୋଇ ନବବଧୂର ମୂର୍ଚ୍ଛା ଯିବାର ଉପକ୍ରମ ନ ହେଉ ପଛକେ, ଅନ୍ତତଃ ମୁଣ୍ଡଟା ଲାଜରେ ତଳକୁ ନଇଁ ପଡ଼ିଥିବ, ସେଟି ମୁହଁରେ ବ୍ରୀଡ଼ାର ଅନୁରଞ୍ଜନ ମଧ୍ୟ ଦେଖିଲା ନାହିଁ । ବିବାହ ସଭାରେ ପୁତ୍ରବଧୂର ସେହି ଅକୁଣ୍ଠିତ ଚାହାଣି, ସେହି ନିର୍ଭୀକ ଉନ୍ନତ ଶିର ଦେଖି ମରୁଭୂମିବାସୀ କୌଣସି ଉଟପକ୍ଷୀର ଜନ୍ତୁ ବିଶେଷର ଛବି ତାର ସ୍ମୃତିପଥରେ ଉଦୟ ହେଲା । ଏ ରଙ୍ଗମଞ୍ଚ ଉପରେ ନିଜର ଅଂଶ ଅଭିନୟ କରିବାକୁ ଅଧିକାଂଶ ନାରୀ ଜୀବନରେ ଏକାଧିକବାର ସୁଯୋଗ ପାଆନ୍ତି ନାହିଁ ଯେ ତାହା ଅଭ୍ୟାସଗତ ହୋଇଯିବ । ତେବେ ଏ ଅଗ୍ନିପରୀକ୍ଷା ଭିତରେ ଏପରି ଅବଲୀଳାକ୍ରମେ ମୁଣ୍ଡ ଟେକି ଚାଲିବାକୁ ଏପରି ସାହସ ଏ ପାଇଲା କୋଉଠୁ ? କଅଣ ଘରର ଅନ୍ତରିକ୍ତ ସାହେବିଆନା ଚାଲି

ଚରଣରୁ ? ତାହାଇ ଯଦ ହେଲା, ତାହା ହେଲେ, ବୁଡୀ ଭାବଲା , ଦସ୍ତା କର ଶାଢୀର ମାୟା ପରିତ୍ୟାଗ କରି ଗାଉନ୍ ପିନ୍ଧିଥିଲେ ତ ନଥା ଛଣ୍ଡିଯାଇଥାନ୍ତା ।

ବାହା ନେଉଥାଣି ବରକନ୍ୟାର **reception** ବା ପମ୍ଭଗ୍ରାସ ହେଲ ଘରର ପ୍ରଶସ୍ତ ଅଗଣା ମଝିରେ ନିମନ୍ତ୍ରିତ ବନ୍ଧୁବାନ୍ଧବଙ୍କ ପରିବେଷ୍ଟନୀ ଭିତରେ । ସନ୍ଧିର ଭୂରି ଭୋଜନର ପ୍ରଥମ ଦଫା ଆରମ୍ଭ ହେଲା । ବାସ୍ତଘର କେକ୍ କଥା ହେଲା ବରକନ୍ୟାଙ୍କର ଯୁଗ୍ମ ହସ୍ତ ସାହାଯ୍ୟରେ । ଠାକୁରଙ୍କ ପ୍ରସାଦ ଭଳି କଥା କେକ୍, ଖଣ୍ଡ ସହିତ ସୁରା ଏବଂ ମିଷ୍ଟାନ୍ନ ବଣ୍ଟନର ଧୂମ୍ ପଡିଗଲା । ତା ପରେ ଆରମ୍ଭ ହେଲା ବଚନିକା । କାନ୍ତ ମା ଗୀର୍ଜା ଘରେ ଦେଖିଥିଲା ବରକନ୍ୟାଙ୍କର, ବିଶେଷ କରି କନ୍ୟାର ଅଭିନୟ ନିର୍ବାକ୍ । କିନ୍ତୁ ଏଠି ନାନା ପ୍ରକାର ସ୍ୱାଗତ ସମ୍ଭାଷଣ ଆଶୀର୍ବଚନ ଅଭିବାଦନ ଏବଂ ଅଭିନନ୍ଦନ ପରେ ଡକରା ପଡିଲା ବରକନ୍ୟାଙ୍କୁ ଉତ୍ତର ଦେବାକୁ । ପ୍ରଥମେ ବର ତ ଉଠି ଦୋକ ଗିଳି ଗିଳି ଇଂରାଜିରେ ଉପସ୍ଥିତ ଜନତାକୁ ସେମାନଙ୍କର ଶୁଭ ଇଚ୍ଛା ଜ୍ଞାପନ ସକାଶେ ଧନ୍ୟବାଦ ଦେଇ ଅତ୍ୟଧିକ ଲଜ୍ଜାରେ ମୁହଁକୁ ଲାଲ କରି ଏବଂ ଶରୀରକୁ ଗଳଦ୍‌ଘର୍ମ କରି କୌଣସିମତେ ତଳମୁହାଁ ହୋଇ ବସିପଡିଲା ନିଜ ଜାଗାରେ । ତା ପରେ ଯେତେବେଳେ କନ୍ୟାକୁ ନିମନ୍ତ୍ରଣ କରାଗଲା ଉତ୍ତର ଦେବାକୁ,କାନ୍ତର ମା ଆଖି ବାଲୁ ବାଲୁ କରି ସ୍ୱରଆଡ଼କୁ ଚାହିଁବାକୁ ଲାଗିଲା । ଭାବିଲା,କଣ ସତେ ବୋହୂ ଉଠି କିଛି କହିବ କି ? କନ୍ୟା ଆସନ ଛାଡି ଉଠିଲା, ଅଧର କୋଣରେ ମୃଦୁହାସ୍ୟର ଅଶରୀରୀ ପ୍ରେତାତ୍ମାକୁ ନଚାଇ । ଏହା ଦେଖି ବୁଢୀର ଅକଲ୍ ଗୁଡୁମ୍ । ଅଉ ଯେତେବେଳେ ଅତି ପ୍ରାଞ୍ଜଳ ଇଂରାଜିରେ ଉପସ୍ଥିତ ଲୋକଙ୍କୁ ଧନ୍ୟବାଦ ଦେବାକୁ ଲାଗିଲା, ସେ କଥାକୁ ବୁଢୀ ଯେ କେବଳ କାନରେ ଶୁଣିଲା,ତା ନୁହେଁ, ତା ତଳ ପାଟି ଓହଳି ପଡିଲା ଏବଂ ମୁହଁ ଆଁ କରି ବୁଢୀ ସେ କଥାସବୁ ଶୁଣିବାକୁ ଏବଂ ଗିଳିବାକୁ ଲାଗିଲା । ଅବଶେଷରେ କନ୍ୟା ବିଦାୟ ସମୟରେ ମଥୁର ବାବୁଙ୍କର ସ୍ତ୍ରୀ ଆସି ଝିଅର ଦୁଇ ହାତକୁ କାନ୍ତ ଏବଂ କାନ୍ତ ମାର ହାତରେ ଧରେଇ ଦେଇ

ଝିଅ ସମର୍ପଣ କଲେ ଅଶ୍ରୁପୂର୍ଣ୍ଣ ଚକ୍ଷୁରେ ଏବଂ ଜ୍ୱାଇଁ ଓ ସମ୍ବନ୍ଧୀଣୀଙ୍କୁ ଝିଅ ସକାଶେ ନାନାଦି ଅନୁନୟ ବିନୟ କରିବା ସମୟରେ ଯେତେବେଳେ କହିଲେ ଝିଅ ଟିକେ ବଦ୍‌ରାଗୀ, ସେତିକି ବେଳୁ କାନ୍ତର ମା ମନେ ମନେ ପ୍ରମାଦ ଗଣିଲା । ଭାବିଲା, ଏ ଭଳି ସ୍ତ୍ରୀ ନେଇ କାନ୍ତ କେମିତି ଚଳିବ ଓ ଏ ଭଳି ବୋହୂ ନେଇ ସେ ନିଜେ କିପରି ଘର କରିବ ?

ତା ପରେ କଟକକୁ ଆସି ଆରମ୍ଭ ହେଲା ଚନ୍ଦ୍ରକାନ୍ତର ବିବାହିତ ଜୀବନର ପ୍ରତିଦିନର ଘାତପ୍ରତିଘାତ । ପ୍ରଥମ ପ୍ରଣୟର ପ୍ରବଳ ପ୍ରବାହରେ ଏ ଦୁଇ ପ୍ରାଣ ବୁଡି ଏକାକାର ହୋଇ ଯାଇଥିଲା ପହିଲୁ ପ୍ରାୟ ଛ ମାସ । କିନ୍ତୁ ତା ପରେ ଭଟ୍ଟା ଆରମ୍ଭ ହେଲା, ଅବଶ୍ୟ ଅତି ଧୀରେ । ନୂତନତ୍ୱର ମୋହ ଯେତେ କମିବାକୁ ଲାଗିଲା, ଚରିତ୍ରର ପୁରାତନ ଠେଙ୍ଗ ଜମିର ରୁକ୍ଷତା ତେତେ ଉପରକୁ ଦେଖାଗଲା । ଶାଶୁବୋହୂଙ୍କର ତ ହାଣ୍ଡିପଲମ ଭଳି ଠୁକ୍‌ଠାକ ନୂଆ ବୋହୂ ଘରକୁ ଆସିବାର ଦିନେ ଦୁଇଦିନ ଭିତରେ ଆରମ୍ଭ ହୋଇ-ଗଲା । ବୋହୂ ଯେତେବେଳେ ଚଟିଜୋତା ଫଟର ଫଟର କରି ରନ୍ଧାଶାଳକୁ ପଶିଗଲା ଶାଶୁକୁ ରନ୍ଧାବଢାରେ ସାହାଯ୍ୟ କରିବ ବୋଲି, ଶାଶୁ ଭିତରୁ ପାଟି କରି ଉଠିଲା, 'ବାହାରେ ଜୋତା ଛାଡି ଆ, ଏଇଟା ରନ୍ଧାଶାଳ ବୋଲି କଣ ଜଣାପଡୁ ନାହିଁ ?' ବୋହୂ କହିଲା, 'ମଲା, ଖ୍ରୀଷ୍ଟିୟାନର ପୁଣି କଣ ଛୁଆଁ ଛୁତ କାରଣ ମ ?' ଶାଶୁ ବି ନାଛୋଡ଼ବନ୍ଧା । କହିଲା, 'କଣ ! ଖ୍ରୀଷ୍ଟିୟାନ ହୋଇଛୁ ବୋଲି ମଣିଷପଣିଆ ବି ବାଦ ଦେଇଛୁ କି ? ଖ୍ରୀଷ୍ଟିୟାନ ହୋଇଛୁ ବୋଲି କଣ ଖଟପଲଙ୍କ ଉପରେ ବି ଜୋତାପିନ୍ଧି ଚାଲିବୁ ନା କଣ ?' ବୋହୂ ଅବଶ୍ୟ ଏ ତୁଳନାରେ ସାମଞ୍ଜସ୍ୟର ଅଭାବ ଦର୍ଶାଇ ଦେଲା । ଶାଶୁ ପ୍ରତ୍ୟୁତ୍ତରରେ ଦେଶୀୟ ଗୃହସ୍ଥର ରନ୍ଧାଶାଳ ଯେ ସାହେବ ଘରର ବବୁର୍ଚ୍ଚିଖାନା ନୁହେଁ, ତାହା ଜଣାଇ ଦେଲା ।

ପୁତ୍ରବଧୂର ଗୃହପ୍ରବେଶ ସଙ୍ଗେ ସଙ୍ଗେ ଯେ ନୂତନତ୍ୱର ପ୍ରବେଶ ହେଲା, ତାହା ସହିତ କୌଣସି ପ୍ରକାରେ ରଫା କରି ଚଳିବାକୁ ଯେ

# ରେନେସାଁର ଉନ୍ମେଷ

କାନ୍ତର ମା ସଙ୍ଗ ନ ଥିଲା, ତାହା ନୁହେଁ । କିନ୍ତୁ ଯେତେବେଳେ ଦେଖିଲା, ନୂତନର ଚେଷ୍ଟା ହେଲା ସଦାବେଳେ ପୁରାତନର ଅଧିକାର ଉଚ୍ଛେଦ କରିବା, ସ୍ଥିରକଲା, ବିନା ଯୁଦ୍ଧରେ ସୂଚ୍ୟଗ୍ର ପରିମାଣ ଭୂମି ସୁଦ୍ଧା ଛାଡ଼ିବ ନାହିଁ । ବୋହୂର ଯେଉଁସବୁ ଆବଦାର ଅନ୍ତତଃ ଶାଶୁ ଆଖିରେ ଅନ୍ୟାୟ ଅବା ଅତିରିକ୍ତ ବୋଲି ଦେଖାଯାଉଥିଲା, ସେ ସବୁକୁ ସେ ପ୍ରଥମେ ପ୍ରଶ୍ରୟ ଦେଇଥିଲା । ମନେ କରିଥିଲା, ଘରକରଣାରେ ମନ ବସିଗଲେ ସମୟାନୁକ୍ରମେ ଏସବୁ ଅତିରିକ୍ତତା ଆପେ କମିଯିବ; କିନ୍ତୁ ଫଳ ହେଲା ଓଲଟା । ପୁରାତନ ଯେତିକି ନଇଁଲା, ନୂତନ ସେତିକି ଚଢାଉ କଲା । ବୋହୂ ଘରେ ପଶିବାର ସପ୍ତାହକ ଭିତରେ ଯେତେବେଳେ ଶାଶୁକୁ କହିଲା, 'ମା, ମୁଁ ସାଙ୍ଗରେ ଯେଉଁସବୁ ଚିନାବାସନ କୋସନ ରେକାବ ଆଣିଛି, ତାକୁ ଆଲମାରିରେ ଖାଲି ବନ୍ଦ କରି ନ ରଖି ବ୍ୟବହାର କଲେ କଣ ହୁଅନ୍ତା ନାହିଁ ? ଖାଲି ପଡି ପଡି ଭାଙ୍ଗିବ କାହିଁକି ?' ଶାଶୁ ଏ ବିଷୟରେ ତିଳେମାତ୍ର ଆପତ୍ତି କରି ନ ଥିଲା । ଫଳରେ ମାଟି ଉପରେ ଆସନ ପାରି କଂସା ବାସନରେ ଖାଇବା ପରିବର୍ତ୍ତେ ଖାନା ସଜା ହେଲା ମେଜ ଉପରେ ଏବଂ ଖିଆହେଲା କଣ୍ଟାଚାମୁଚ ସାହାଯ୍ୟରେ । ଅବଶ୍ୟ ଖାଇବାପିଇବା ବିଷୟରେ ବୁଢ଼ୀ ଆପଣାର ସାବକ ପରିପାଟି ବଦଳାଇ ନ ଥିଲା । କିନ୍ତୁ ମେଜ ଉପରେ କଣ୍ଟାଚାମୁଚରେ ଖାଇବ ବୋଲି ତ ଆଉ ପଖାଳ ଭାତ ଶୁଖୁଆପୋଡ଼ା ନେଇ ମେଜ ଉପରେ ଥୋଇଲେ ଚଳିବ ନାହିଁ ? ଭକ୍ଷ୍ୟଦ୍ରବ୍ୟକୁ ଭକ୍ଷ୍ୟପାତ୍ରର ଯୋଗ୍ୟ କରିବାର ଆବଶ୍ୟକତା ଅନୁଭୂତ ହେଲା । ଏହି ଆବଶ୍ୟକତାର ଅନୁଭୂତି ଫଳରେ ଏବଂବିଧ ଭୋଜନର ଯାବତୀୟ ଆନୁଷଙ୍ଗିକ ବିଷୟମାନର ଆୟୋଜନ ହେଲା, ଅର୍ଥାତ ପାଉଁରୋଟି, କେକ୍, ବିସ୍କୁଟ୍ ପ୍ରଭୃତି ପୁରାଦସ୍ତୁର ସାହେବିଖାନାଠାରୁ ଆରମ୍ଭ କରି ସେ ସବୁ ପ୍ରସ୍ତୁତ କରିବାରେ ସିଦ୍ଧହସ୍ତ ଯେଉଁ ଦାଢିଆ ପୂଝାରି, ତାର ନିଯୁକ୍ତ ଏବଂ ତାକୁ ସମୟ ଅନୁକ୍ରମରେ ପରିଚାଳନ କରିବା ପାଇଁ ହାତଘଣ୍ଟା ବଜାଇବା ପ୍ରଭୃତି ଯାବତୀୟ ଆଦବ କାଇଦା ପୁରା ଦସ୍ତୁର ତଇନାତ୍ ରହିଲା । ବୁଢ଼ୀ ଏଥିରେ ବି ବାଧା ଦେଲା ନାହିଁ, କେବଳ ଯା କେବେ କେବେ ତାର

# ସାମୟିକ

ଖାଣ୍ଡଆ ଜାତି ମୋଟେ ଅଧେ କଥା ହାଣ୍ଡିଦଏ, ସେତେବେଳେ ଦେଖେ ବୃଦ୍ଧ ସ୍ୱାମୀର ଅନୁକରଣ ପ୍ରବୃତ୍ତି ଅତ୍ୟଧିକ ବଢ଼ି ଉଠିଛି । ସାହେବ୍‌ଖାନା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ସାହେବିଆନାର ଆମଦାନି ହେଲା । ବୋହୂ ପ୍ରତି ସାତଦିନରେ ଥରେ ଚାପାନ ଏବଂ ପନ୍ଦର ଦିନରେ ଥରେ ଡିନାର ଅର୍ଥାତ୍ ରାତିଭୋଜନରେ ଘନିଷ୍ଠ ପରିଚିତ ପ୍ରଭୃତି ଯାବତୀୟ ପ୍ରକାର ବନ୍ଧୁଙ୍କୁ ନିମନ୍ତ୍ରଣ କରିବାକୁ ଲାଗିଲା । ବୁଢ଼ୀ ଘରର ସମସ୍ତ ଆୟବ୍ୟୟର ମାଲିକ୍ । ଅତଏବ ବୋହୂକୁ ଶୁଣାଇଦେଲା, ଅବସ୍ଥା ବିପଦଜନକ, ତାର ପୌନଃପୌନିକ ବନ୍ଧୁ ସମ୍ମେଳନ ବଡ଼ ବେଶୀ ବ୍ୟୟସାପେକ୍ଷ । ଘରକୁ ଦେଉଳିଆ କରିବାର ପ୍ରଶସ୍ତ ଉପାୟ । ଏଣିକି ସେ ଏ ଖର୍ଚ୍ଚ ବାଧ ହୋଇ ନାମଞ୍ଜୁର କରିବ । ଏହା ଶୁଣି ବୋହୂ ହେଲା ଅଗ୍ନିଶର୍ମା । ଆଉ କିଛି କହିଲା ନାହିଁ; କେବଳ ଗୁମ୍ ହୋଇ ରହିଲା । ଶୁକ୍ରବାର ରାତି ପାହିଲା, ଶନିବାର ସକାଳ ହେଲା । ସେ ଶନିବାର ଚାପାନର ପାଳି; କିନ୍ତୁ ବୋହୂ ସକାଳୁ ଉଠି ସେ ଦିନ ରାତିରେ ଡିନାରକୁ ଛ ସାତଜଣ ବନ୍ଧୁଙ୍କୁ ନିମନ୍ତ୍ରଣ କରି ନିମନ୍ତ୍ରଣ ପତ୍ର ସେମାନଙ୍କୁ ପହଞ୍ଚାଇବାକୁ ଚାକର ହାତରେ ଦେଲା ଓ ଡିନାର ସକାଶେ ଜିନିଷପତ୍ର କିଣିବା ପାଇଁ ଏକ ଲମ୍ବା ଫର୍ଦ୍ଦ ସେହି ଚାକର ହାତରେ ଶାଶୂ କତିକୁ ପଠାଇଦେଲା । ଶାଶୂ ବଜାରର ସେ ଫର୍ଦ୍ଦକୁ ତ ମୋଡ଼ାମୋଡ଼ି ହାତମୁଠାରେ ରଖିଲା, ତା ସଙ୍ଗେ ସଙ୍ଗେ ନିମନ୍ତ୍ରଣ ପତ୍ର ସବୁ ନେଇ ଚୁଲିରେ ପୁରାଇ ଦେଲା । ବୋହୂ ଚାକରକୁ ଡାକି କୈଫିୟତ ତଲବ କଲା, 'ତୁ ଯାହାର ଚିଠି ତାକୁ ନ ଦେଇ କାହିଁକି ଅନ୍ୟ ଲୋକ ହାତରେ ଦେଲୁ ?' ଚାକର ଉତ୍ତର ଦେଲା, 'ମୁଁ ତ ଆଉ କାହା ହାତରେ ଦେଇ ନାହିଁ, ବୁଢ଼ୀମାଙ୍କ ହାତରେ ଦେଇଛି ।' ଉତ୍ତରରେ ଦୁଇ ଗାଲରେ ଠୋ ଠୋ ଚଟକଣା ଖାଇ କାନମୁଣ୍ଡା ଆଉଁଷି ଚାକର ଆସି କାନ୍ଦିଲା ଶାଶୂ ପାଖରେ । ଶାଶୂ କେବଳ ଚାକରକୁ ନୁହେଁ, ବୋହୂକୁ ବି ଶୁଣେଇ କହିଲେ, 'ରାମା, ଖବରଦାର, ଆଜଠୁଁ ଏ ଘରର କୌଣସି କାଗଜ ପତ୍ର କି କୌଣସି ଜିନିଷ ଚାକରବାକର ମୋ ଅଜାଣତରେ କାହାରକୁ ନେବେ ନାହିଁ, ଏ ଘରର ମାଲିକ ମୁଁ । ଏହାର ଅନ୍ୟଥା ଯେଉଁ ଦିନ ହେବ, ସେହି ଦିନ ତୁମ

# ଚେହ୍ନେସ୍ୱର୍ ଭସ୍ମମଣ୍ଡ

ସବୁରି ଏ ଘରେ ଚାକରି କରିବାର ଶେଷ ଦିନ ହେବ । କାଲିର କଚେରି ଯିବାର ସମୟ ହୋଇଥିବାରୁ ଏ ଗଣ୍ଡଗୋଳର ମୀମାଂସା ବେଶି କିଛି କରି ନ ପାରି କେବଳ ସ୍ତ୍ରୀକୁ ପୁରୁଷ ଚାକରଙ୍କ ଉପରେ ହାତ ଉଠାଇବା ଯେ ଅନ୍ତତଃ ସ୍ତ୍ରୀଲୋକ ପକ୍ଷରେ ନିରାପଦଜନକ ନୁହେଁ, ତାହା ସ୍ମରଣ କରାଇଦେଇ ଏବଂ ମାଆର ତତ୍ତ୍ୱାବଧାନରେ ଦୁଇଚାଣ୍ଡା ନାକରେ କାନରେ ଗୁଞ୍ଜି ଦେଇ ବାହାରି ପଡିଲା କଚେରିକୁ ଯିବ ବୋଲି । ସେଦିନ ଦିନଯାକ କାଣ୍ଡି କଉଡ଼ି ଚୁପ୍‌ଚୁପ୍ । ସନ୍ଧ୍ୟା ହେଲା, କାନ୍ତ ଫେରିଲା କଚେରିରୁ ରକ୍ତମୁହାଁ ହୋଇ । ମା ଖବର ଦେଲା, ବୋହୂ ନ ଖାଇ ନ ପିଇ ଚୁପ୍ ହୋଇ ଖଟ ଉପରେ ଶୋଇଛି । କାନ୍ତ ଲୁଗାପଟା ଛାଡ଼ି ଲାଗିଗଲା ମାନଭଞ୍ଜନ କରିବାରେ । କହିଲା, "ନମ, ତମେ ନ ଖାଇ ନ ପିଇ ଏପରି ପଡ଼ି ରହିଛ, ଏ କଣ ଭଲ କଥା? ମା ବି ଏ ପର୍ଯ୍ୟନ୍ତ ମୁହଁରେ ପାଣି ଦେଇ ନାହାନ୍ତି ।" ସ୍ତ୍ରୀ କହିଲା, "ମୁଁ ଆଜି ଖାଇବି ନାହିଁ ।" ସ୍ୱାମୀ କହିଲା, "ମା' ତ କିଛି ଅନ୍ୟାୟ କଥା କହି ନାହାନ୍ତି, ଥରକୁ ଥର ଭୋଜ ଭାତ କରିବାରେ ଅନେକ ଖର୍ଚ୍ଚ ହେଉଛି ।" ସ୍ତ୍ରୀ କହିଲା, "ଯଦି ଖରଚ କରିପାରିବ ନାହିଁ ତ ମୋତେ ବାହା ହୋଇଥିଲ କାହିଁକି ?" ଉତ୍ତରରେ ସ୍ୱାମୀ କହିଲା, "ନମ, ଏଇଟା ତମର କିନ୍ତୁ ଅନ୍ୟାୟ କଥା । ତମ ନିଜ ସକାଶେ ତ କିଛି ଖରଚ କମାଇବାର ବନ୍ଦୋବସ୍ତ ହେଉ ନାହିଁ । ବାହାରର ପାଞ୍ଚ ଜଣ ଆସି ଯେ ଆମ ଖରଚରେ ମଉଜ କରୁଥିଲେ, ସେ ଅକାରଣ ଖର୍ଚ୍ଚର ମୁହଁ ମା ବନ୍ଦ କରିଦେଲେ !" ସ୍ତ୍ରୀ କହିଲା, "ତମର ତ ନିଜର ବୁଦ୍ଧି ଶୁଦ୍ଧି କିଛି ନାହିଁ, ତା ନ ହେଲେ କହନ୍ତ ନାହିଁ ମଉଜଟା ଖାଲି ଆଗନ୍ତୁକ ବନ୍ଧୁବାନ୍ଧବଙ୍କର ହେଉଥିଲା ବୋଲି । ତମ ମା ଆଜି ମୋତେ ଶୁଣେଇ ଦେଇଛନ୍ତି, ଏ ଘରର ମାଲିକ ସେ । ତେବେ, ଏ ଘରେ ମୋର ସ୍ଥାନ କେଉଁଠି ? ମୁଁ କଣ ଏ ଘରର ଚାକର ନା କଣ ? ମୋତେ ତ ଚାକରଙ୍କଠୁଁ ବି ହୀନ କରିଦିଆହୋଇଛି ଆଜି ସକାଳେ । ମୁଁ ଚେର ନା ତଚର ଯେ, ତୁମ ଘରର ଚାକରବାକର ମୋତେ ଚଉକି ଦେବେ । ତୁମ ମାର ଅନୁମତି ନ ନେଇ ମୁଁ ଚାକରବାକରଙ୍କୁ ହୁକୁମ ଦେଇପାରିବି ନାହିଁ । ଏ ବିଷୟରେ ମୀମାଂସା ନ ହେଲେ ମୁଁ ଏ ଘରେ ଜଳ ସ୍ପର୍ଶ କରିବି ନାହିଁ ।"

ସ୍ୱାମୀ ଉତ୍ତର ଦେଲା, "ନମ, ଏ ଘରେ ମୋର ସ୍ଥାନ ଯୋଉଠି, ତୁମର ସ୍ଥାନ ସେଇଠି । ଏ କଥା ସତ ଯେ ମୋର ବାପ ମାର ଜୀବତ ଅବସ୍ଥାରେ ଏ ଘରର ମାଲିକ ସେମାନେ । ପୁଅ ଝିଅ ଅବା ପୁଅ ବୋହୂ ବାପମାର ଗୋଡ଼ତଳିଆ; କିନ୍ତୁ ସେଥିରେ ସେମାନେ ନିଜକୁ ଅପମାନିତ ମନେ କରିବାର କୌଣସି କାରଣ ନାହିଁ ।"

ସ୍ତ୍ରୀ କହିଲା, "ତୁମେ ଖାଲି ବି. ଏ. ପାଶ କରିଛ, ନା ପାଠ ଶାଠ ପଢିଛ । ଯଦି ତୁମର ବାପର ସମ୍ପତ୍ତିର ମାଲିକ ତୁମର ମା ହେଲା, ଯେହେତୁ ସେ ତାଙ୍କ ବିବାହିତା ସ୍ତ୍ରୀ, ତେବେ ତୁମ ଅର୍ଜନର ମାଲିକ କିଏ ? ତୁମର ମା ନା ତୁମର ସ୍ତ୍ରୀ ?"

କାନ୍ତ ଉତ୍ତରରେ କହିଲା, "ନମ, ତମ ବାପର ତମେ ଝିଅ ନ ହୋଇ ପୁଅ ହୋଇଥିଲେ ନାଁ ରଖିଥାନ୍ତ । ମୁଁ ଦେଖୁଛି ଓକିଲାତି ବୁଦ୍ଧିଟା ଉତ୍ତରାଧିକାରୀ ସୂତ୍ରରେ ଲାଭ କରିଛ । ତମେ ଓକିଲ ହୋଇ ପାର; କିନ୍ତୁ ମନେ ରଖିବାକୁ ହେବ, ବକ୍ସର କରିବାର ପେଶା ହେଉଛି ମୋର । ବାବାଙ୍କର ଜିନିଷ ଉପରେ ମା ତାଙ୍କର ଯେଉଁ ଅଧିକାର କଥା କହିଲେ, ସେଥିରୁ କଣ ବୁଝିଲ ଯେ, ସେ ଆଇନର ଦାବୀ ଜାହିର କରୁଥିଲେ ? ଦାବୀ ଆଇନସଙ୍ଗତ କି ନୁହେଁ, ଏ କଥା ସେ ଜୀବନରେ ବୋଧହୁଏ ମୁହୂର୍ତ୍ତକ ପାଇଁ ସୁଦ୍ଧା ଭାବି ନାହାନ୍ତି । ଏ ଦାବୀ ହେଉଛି ପ୍ରେମର ଦାବୀ, ଯାହା ସବୁବେଳେ ପ୍ରେମାସ୍ପଦର ଜିନିଷ ବ୍ୟବହାର କରିବାରେ ଟିକିଏ ହେଲେ କୁଣ୍ଠା ନ ଥାଏ, ତା କରିବା ପାଇଁ ତାକୁ କୌଣସି ଦାବୀ ଜାହିର କରିବାକୁ ହୁଏ ନାହିଁ । ବ୍ୟବହାର କରିବାର ଇଚ୍ଛା ସ୍ୱଭାବତଃ ଜାତ ହୁଏ ଏବଂ ଏ ପ୍ରକାର ସ୍ୱଚ୍ଛନ୍ଦ ବ୍ୟବହାରରେ ପ୍ରେମିକର ଯେଉଁ ଦୃଢ ନିର୍ଭର ଓ ନିର୍ଭୀକତା ପ୍ରକାଶ ପାଏ, ତାହା ହେଉଛି ପ୍ରେମର ସ୍ୱାଭାବିକ ଅଭିବ୍ୟକ୍ତି ।"

ସ୍ତ୍ରୀ କହିଲା, "ହେଲା, ମୁଁ ମାନି ନେଉଛି, ଏ ଦାବୀଟା ପ୍ରେମର ଦାବୀ; ଆଇନର ଦାବୀ ନୁହେଁ । ମୁଁ ଯେ ତୁମର ସ୍ତ୍ରୀ, ତୁମର ଅର୍ଜନକୁ ଅଧିକାର ଏବଂ

ବ୍ୟବହାର କରିବାକୁ ଏହି ଯେ ମୋର ପ୍ରେମର ଦାବୀ ଅଛି, ସେ ବିଷୟରେ କି ବ୍ୟବସ୍ଥା କରୁଛ ?''

ସ୍ୱାମୀ ବୁଝେଇଲା,"ପ୍ରେମ କେବେ ଦାବୀର ଅସ୍ଫାଳନ କରେ ନାହିଁ;କାରଣ ପ୍ରେମ ନିଜେ ଦାବୀ କରି ପାଇବା ଜିନିଷ ନୁହେଁ । ପ୍ରେମ ସହଜ ଭାବରେ ଗ୍ରହଣ କରେ, ଅଧିକାର କରେ, ବ୍ୟବହାର କରେ । ଯେଉଁଠି ଦାବୀର ଅସ୍ଫାଳନ ଆବଶ୍ୟକ ହୁଏ,ସେଠି ବୁଝିବାକୁ ହେବ, ଦାବୀଦାର ନିଜର ଅଧିକାର ବିଷୟରେ ନିଃସନ୍ଦେହ ନୁହେଁ । ମୁଁ ଅବଶ୍ୟ ସ୍ୱୀକାର କରୁଛି, ମାଆଙ୍କର ମଧ୍ୟ ଠିକ୍ ହୋଇ ନାହିଁ ଏ ଦାବୀର କଥା ଉଲ୍ଲେଖ କରିବା, ସେ କେବଳ ରାଗରେ ଏ କଥା କହିଛନ୍ତି। କିନ୍ତୁ ସେ ତ ଗୁରୁଜନ, ତାଙ୍କୁ ମୁଁ କିଛି କହିପାରେ ନାହିଁ । ଆଉ, ମୋର ଅର୍ଜନ ଉପରେ ତୁମର ଯେ ପ୍ରେମର ଦାବୀ ଅଛି, ସେ କଥା ମୁଁ ଅସ୍ୱୀକାର କରୁ ନାହିଁ । କିନ୍ତୁ ପ୍ରେମ ତ କେବଳ ଦାମ୍ପତ୍ୟପ୍ରେମ ନୁହେଁ, ପିତୃମାତୃପ୍ରେମ ମଧ୍ୟ ଅଛି । ସେ ପ୍ରେମର ଦାବୀ ସମ୍ବନ୍ଧରେ କଣ କହୁଛ ?''

ନର୍ମଦା କଣ କହିବାକୁ ଯାଉଥିଲା, କିନ୍ତୁ ତା ପୂର୍ବରୁ କାନ୍ତର ମା ଘର ଭିତରକୁ ପଶିଯାଇ କହିଲା, ''ବୋଉ, କଥା କଟାକଟିର ଏତେ ଦରକାର କଣ ? ତୋର ମତଲପ୍‌ଟା କଣ ସିଧା ସିଧା କହୁ ନାହୁଁ ?"

ନର୍ମଦା ଉତ୍ତର ଦେଲା, "ମୁଁ ଏ ଘରେ ରହିବ ନାହିଁ ।''

ଶାଶୂ କହିଲା, "ତା ମାନେ, ତୁ ଭିନ୍ନ ହେବୁ ?"

ବୋହୂ କହିଲା,''କଥା କହି ତାର ମାନେ ବୁଝାଇବାକୁ ମୋର ଧୈର୍ଯ୍ୟ ନାହିଁ ।'' ଉତ୍ତରରେ ଶାଶୂଠୁ ଶୁଣିଲା,''ଅଧୈର୍ଯ୍ୟ ହେବାର ଦରକାର ନାହିଁ । ତୁମେମାନେ ଯେମିତି ଭିନେ ରହିପାର, ତାର ବ୍ୟବସ୍ଥା ମୁଁ ଅତିଶୀଘ୍ର କରିଦେବ ।"

ଫଳରେ ବାହାଘରର ଆଠ ମାସ ମଧ୍ୟରେ କାନ୍ତ ଆଉ ତାର ସ୍ତ୍ରୀ ବାପଘରୁ ଅଲଗା ହୋଇ ଅନ୍ୟ ଘର ଭଡ଼ା କରି ରହିଲେ । ନର୍ମଦାର ମନର ଅଭିମାନ ମେଣ୍ଟିଲା; କିନ୍ତୁ କାନ୍ତ ପକ୍ଷରେ ଏ ହେଲା ବାପ ଋଣ ଚିଙ୍କି ଗିଲା । କାନ୍ତ ଯେତେ ଚେଷ୍ଟା କଲା ମା ଆଉ ସ୍ତ୍ରୀ ମଧ୍ୟରେ ମିଳନ ଘଟାଇ ଏକାଠି ରହିବାର ବ୍ୟବସ୍ଥା କରିବାକୁ, ସେ ସବୁ ଚେଷ୍ଟା ବିଫଳ ହେଲା । ଯେତେବେଳେ ପୁଅବୋହୂ ନୂଆଘରକୁ ଯିବାକୁ ବାହାରିଲେ, ସେତେବେଳେ କାନ୍ତର ମା ବୋହୂକୁ କହିଲେ, "ତୁ ଏଡ଼େ ଘରଭଙ୍ଗେଇ ଲୋ ।" ବୋହୂ କହିଲା, "ମୁଁ ଘର ଭାଙ୍ଗିଲି ନା ମୋ ସ୍ୱାମୀକୁ ନେଇ ଘର କରିବାକୁ ଯାଉଛି ।" ଶାଶୁ କହିଲା, "ସ୍ୱାମୀ ସ୍ୱାମୀ ହେଉଛୁ, ସ୍ୱାମୀ ଅର୍ଜନକୁ ଆବୋରି ପଡୁଛୁ, ସ୍ୱାମୀ ପାଇଲୁ କୋଉଠୁ, କିଏ ତାକୁ ଅଣ୍ଡାରୁ ଭେଣ୍ଡା କଲା ?" ଉତ୍ତରରେ ବୋହୂଠୁ ଶୁଣିଲା, "ସେ କଥା ଭାବିବା ମୋର ଦରକାର ନାହିଁ ।" ବାପ ପାଖକୁ ଯେତେବେଳେ କାନ୍ତ ଯାଇ କହିଲା, "ବାବା ମୋତେ କଣ ନିଜର ଅନିଚ୍ଛା ସତ୍ତ୍ୱେ ନିତାନ୍ତଇ ଭିନ୍ନ ହେବାକୁ ହେବ ? ତମେ ଏହାର କୌଣସି ପ୍ରକାରରେ ହେଲେ ଗୋଟାଏ କିନାରା କର ।" ଯୁଷଫ ବାବୁ କିଛିକ୍ଷଣ ନିସ୍ତବ୍ଧ ରହି କହିଲେ, "ବାପ, କଥାରେ ଅଛି, ଯେତେ ପୁଅ, ସେତେ ଘର । ତେବେ ଏ ବିଚ୍ଛେଦ ଦୁଃଖଟା ବେଶି ଟିକେ ବାଧୁଛି ତୁମ ବାପ ମାର ତୁମେ ଗୋଟିଏ ପୁଅ ହେବାରୁ । ତୁମ ବିବାହ ଦିନରୁ ଏ ଅବଧି ଯାବତୀୟ ଘଟଣା ଦେଖି ମୁଁ ଏ ସବୁ ବିଷୟରେ ଯଥେଷ୍ଟ ଭାବିଛି । ବାହା ଦେବା ବେଳେ ମନେ କରିଥିଲୁ—ଆମ୍ବ ପୋତୁଛୁ, କିନ୍ତୁ ଫଳିଲା ଆମ୍ବଡ଼ା । ଏ ଅନର୍ଥର ମୂଳ ଯେ କେବଳ ଅର୍ଥ, ତାହା ନୁହେଁ । ଏହା ହେଉଛି ଆଦର୍ଶର ସଂଘର୍ଷ । ଏ ଯୁଦ୍ଧର ଶେଷ ଯାଇ ହାରଜିତରେ, ରଫା କରି ଶାନ୍ତି ସ୍ଥାପନ କରିବାର ଆଶା ନାହିଁ । ତୁମର ମାକୁ ମୁଁ ଯେପରି ଜାଣେ, ସେଥିରୁ ବୁଝୁଛି, ସେ ମନେ କରୁଛି ମିଳାମିଶା କରିବାକୁ ସେ ଯଥେଷ୍ଟ ଆଗେଇଛି; ଆଉ ପାଦେ ସୁଦ୍ଧା ଅଗ୍ରସର ହେବ ନାହିଁ । ଆଉ ତୁମର ସ୍ତ୍ରୀ ମଧ୍ୟ ନିଜ ସ୍ଥାନରୁ ପାଦେ ଘୁଞ୍ଚିବ ନାହିଁ । ମିଳନ ହେବ କେମିତି ? ଅତଏବ ଅବସ୍ଥା ଅବଶ୍ୟମ୍ଭାବୀ-

ବୋଲି ଧରିନେବାକୁ ହେବ । ବିଦାୟ ଦେବାକୁ ଅବଶ୍ୟ ବାପ ମାର ମନକୁ କଷ୍ଟ ହେବ । ତଥାପି ଜାଣି ରଖ, ତୁମେ ଦୁଇ ଜଣ ଗଲାବେଳେ ବାପ ମାର ଆଶୀର୍ବାଦ ନେଇ ଯିବ ।"

କାନ୍ତ ତ ସ୍ତ୍ରୀକୁ ନେଇ ଭିନ୍ନ ହେଲା;କିନ୍ତୁ ଭିନେ ରହିବାର ଅବକାଶ ପାଇ ମଧ୍ୟ ସ୍ତ୍ରୀ ସହବାସରେ ଅଶ୍ୱସ୍ତ ହେବା ଦୂରେ ଥାଉ, ଅନ୍ତତଃ ଅଭ୍ୟସ୍ତ ହୋଇ-ପାରିଲା ନାହିଁ । ତାର ମନେ ହେଲା, ସେ ଦୁଇଜଣଙ୍କ ପକ୍ଷରେ ବିବାହ ଦୂର ପର୍ବତ; ପରସ୍ପରଠାରୁ ଯେତେ ଦୂରକୁ ଯାଉଥିବ, ଦିଶିବ ସୁନ୍ଦର । କିନ୍ତୁ କତିକୁ ଆସିଛ କି, ଦେଖିବ ଆବଡ଼ା ଖାବଡ଼ା, ଢେଲା ପଥର, ଖାଲଉଞ୍ଚ । ସାପ, ବାଘ, ଭାଲୁ ପ୍ରଭୃତି ହିଂସ୍ରଜନ୍ତୁମାନଙ୍କ ଅକସ୍ମାତ୍ ଆବିଷ୍କାର କରିବାର ଯେ ଭୟ ନାହିଁ, ତାହା ବି ନୁହେଁ । ବିବାହିତ ଜୀବନର ସଙ୍ଗସୁଖ ଯେ ଦୁଇ ଜଣଙ୍କ ପକ୍ଷରେ କ୍ରମଶଃ ଅସହ୍ୟ ହୋଇଉଠୁଥିଲା ବାପମାର ଉପସ୍ଥିତିର ଅନାବଶ୍ୟକ ପ୍ରତିବନ୍ଧକତା ନ ଥାଇ ସୁଦ୍ଧା ଏହା କାନ୍ତକୁ ଯେ କେବଳ ବିସ୍ମୟରେ ଅଭିଭୂତ କରୁଥିଲା,ତାହା ନୁହେଁ, ଏହା ସ୍ୱାମୀ ସ୍ତ୍ରୀ ଉଭୟଙ୍କ ପକ୍ଷରେ ମଧ୍ୟ ଗୋଟିଏ ମହା ବିଡ଼ମ୍ବନା ହୋଇଉଠିଲା ।

ଯେଉଁ ସବୁ କାରଣରୁ ସ୍ୱାମୀ ସ୍ତ୍ରୀ ଦୁଇଜଣ ଯାକ ଜୀବନର ଗତିପଥରେ ପଦେ ପଦେ ବିଡ଼ମ୍ବିତ ହେଉଥିଲେ,ତାହା ପାଇଁ ନର୍ମଦା ଯେ କେବଳ ଦାୟୀ, ତାହା ନୁହେଁ; କାନ୍ତ ମଧ୍ୟ । ଭିନ୍ନ ହେବାର କିଛି ଦିନ ପରେ ଯେତେବେଳେ ପହିଲା ହେଲା, ସଞ୍ଜବେଳେ କାନ୍ତ କଚେରୀରୁ ଆସିଲା, ସ୍ତ୍ରୀ ହାତରେ ଠଙ୍କା ଦୁଇଶ ଦେଇ ଜଣାଇଦେଲା ଯେ, ସେ ସେଦିନ ଦରମା ପାଇଛି । ନର୍ମଦା ଦୁଇଶ ଠଙ୍କା ଦେଖି ଟିକେ ଆଶ୍ଚର୍ଯ୍ୟ ହେଲା । ମନେ ମନେ ଭାବିଲା, ଦରମା ବାବଦ୍ ଆଉ ଦୁଇଶ ଠଙ୍କା କାହିଁକି ତା ହାତରେ ଦେଲେ ନାହିଁ । କିନ୍ତୁ ସ୍ୱାମୀ ଯେତେବେଳେ ସବୁ ଦରମାତକ ତା ହାତରେ ଦେଲା ନାହିଁ, ମନେ ମନେ କ୍ଷୁବ୍ଧ ହେଲେ ସୁଦ୍ଧା ନିଜର ଆତ୍ମମର୍ଯ୍ୟାଦା ବୋଧରେ ବ୍ୟାଘାତ ଲାଗିବ ବୋଲି ମୁହଁ ଫିଟାଇ କିଛି କହିଲା ନାହିଁ । ଭାବିଲା, ବାକି ଠଙ୍କାତକ ସ୍ୱାମୀ ନିଜ

ହାତରେ ରଖିଲା, ବୋଧହୁଏ ଭବିଷ୍ୟତ ପାଇଁ । ସେଥିପାଇଁ ପ୍ରଥମ ତିନି ମାସରେ ସ୍ୱାମୀଠୁ ଯାହା ପାଇଥିଲା, ତାକୁ ଖରଚ କରି, ନିଜର ସୌଖୀନ ଏବଂ ଘରର ଦରକାରି ଜିନିଷ ଖରିଦ କରିବାରେ ତିନି ମାସ ଶେଷରେ ବଜାରରୁ ଯାହା ଧାର ନେଇଥିଲା, ତାହାର ପରିମାଣ ହେଲା ଅଡେଇଶ ଟଙ୍କା । ତିନିମାସ ପରେ କରଜ ଶୁଝିବା ପାଇଁ ତାଗଦା କଲେ ଦୋକାନିମାନେ ଆସି ଡପୋଷ୍ଟି ବାବୁଙ୍କୁ । କାନ୍ତ ସବୁ ବୁଝିପାରିଲା । ଅପଣା ହାତରେ ତ ଲିଖିଛି, କହୁଛି କାହାକୁ ? ସ୍ତ୍ରୀକୁ ସେ ତ ନିଜେ ସଙ୍ଗରେ ନେଇ ଲୁଗା ଦୋକାନ, ଗହଣା ଦୋକାନକୁ ଯାଇ ସସ୍ତ୍ରୀକ ପରିଚିତ ହୋଇଛି, ଉପାୟ କଣ ? କାନମୁଣ୍ଡା ଆଉଁଷି ବାପଘରୁ ଅଡେଇଶ ଟଙ୍କା ଆଣି କୌଣସିମତେ ଦୋକାନିଙ୍କୁ ଶୁଝିଦେଲା । ଦୋକାନିଙ୍କୁ ଜଣାଇଦେଲା, ଏଣିକି ତା ନିଜ ହାତର ଲେଖା ନ ଦେଖି ସେମାନେ ଯଦି ଧାର ଦିଅନ୍ତି, ସେ ସେଥିପାଇଁ ଦାୟୀ ହେବ ନାହିଁ । କିନ୍ତୁ ଧାର ଶୁଝିବାଠୁଁ ଆରମ୍ଭ କରି ଧାର ଦେବା ବିଷୟରେ ଦୋକାନିଙ୍କ ସହିତ ଯେ ବ୍ୟବସ୍ଥା କଲା, ସେ ସବୁ ବିଷୟରେ ସ୍ତ୍ରୀକୁ ଜଣାଇବା ନିଷ୍ପ୍ରୟୋଜନ ମନେ କଲା । ଭାବିଲା, ସ୍ୱାମୀର ସୁଖଦୁଃଖ ଯେ ସ୍ତ୍ରୀ ବୁଝିଲା ନାହିଁ, ସ୍ୱାମୀକୁ ଟଙ୍କା ଅର୍ଜନ କରିବାର ଯନ୍ତ୍ରବିଶେଷ ମନେକରି ଯେ ବେପରୁଆ ଖର୍ଚ୍ଚ କରେ, ତାକୁ କିଛି ନ କହିବାଇ ବିଧେୟ । କିନ୍ତୁ କାନ୍ତର ଏହି କାର୍ଯ୍ୟଟିର ଫଳ ହେଲା ବିଷମୟ । ଏହାର କିଛି ଦିନ ପରେ, କୌଣସି ଅପରାହ୍ଣରେ, ଅର୍ଥାତ୍ ସ୍ୱାମୀ ଯେତେବେଳେ କଚେରିରେ, ନର୍ମଦା ଦୋକାନିକୁ ଯାଇ ଯେତେବେଳେ ଲୁଗା ଧାର ଆଣିବାକୁ ବସିଲା, ଦୋକାନି ବିନମ୍ର ହାତଯୋଡ଼ି ଜଣାଇଲା, ଡେପୁଟୀ ଘରଣୀଙ୍କୁ ତାର ଧାର ଦେବାର ଆପତ୍ତି କିଛି ନାହିଁ; ମାତ୍ର ଡେପୁଟୀବାବୁଙ୍କର ବ୍ୟବସ୍ଥା ଅନୁସାରେ ତାଙ୍କର ହାତ ଲେଖା ଦରକାର । ନର୍ମଦା ଭୁଲରେ ବାବୁଙ୍କର ଲେଖା ଘରେ ଛାଡ଼ିଆସିଛି କହି, କୌଣସିମତେ ନିଜର ମାନ ବଞ୍ଚେଇ ଶୂନ୍ୟହାତରେ ଘରକୁ ଫେରିଲା; କିନ୍ତୁ ମନ ସେତେବେଳଠୁଁ ତାର ରାଗରେ ଗରଗର । ସ୍ୱାମୀ କଚେରିରୁ ଫେରିଲା ବେଳକୁ ସେ ଖଟ ଉପରେ ପଡ଼ି ରାଗରେ ଫଁ ଫଁ ହେଉଛି । ସ୍ୱାମୀକୁ

ଦେଖିଲାକ୍ଷଣି ତା ଭିତରେ ଯେତେକ ବିଷ ଥିଲା, କଥାରେ ତାଳି ପକାଇଲା, "ଖାଲି ତୁମ ଘରର ସମସ୍ତେ ଛୋଟଲୋକ, ନା ତୁମ ଓଡ଼ିଆ ଜାତିର ସମସ୍ତେ ଛୋଟଲୋକ ?" କାନ୍ତ କଚେରୀ ପୋଷାକ ବଦଳି ନ ଥିଲା,ସେହି ପୋଷାକରେ ଖଟ ନିକଟରେ ଥିବା ଚଉକିରେ ବସିପଡ଼ି କହିଲା, "ତା ମାନେ ?"

ନର୍ମଦା—ସ୍ତ୍ରୀକୁ ଅପମାନ କରିବା କଣ ତୁମ ଦେଶରେ ପୁରୁଷମାନଙ୍କର ସ୍ୱଭାବସିଦ୍ଧ ।

କାନ୍ତ—କାହିଁକି ? ଏତେ ଦିନ ତ ଘରେ ଥିଲ, ବାବା ମାଙ୍କୁ କେବେ ଅପମାନ କରିବାର ଦେଖିଛ ?

ନର୍ମଦା—ଅପମାନ ବୋଧର ଶକ୍ତି ଥିବା ଦରକାର ।

କାନ୍ତ—ଅର୍ଥାତ୍, ଅପମାନିତ ହେବାର ଯୋଗ୍ୟତା ଥିବା ପ୍ରୟୋଜନ । ଛାଡ଼ ଜାତିକଥା, ମୁଁ କେମିତି ତୁମର ଅପମାନ କଲି ବୁଝେଇ ଦେଲ ।

ନର୍ମଦା—ଘରକଣରେ କରିଥିଲେ ତ କେଡ଼େ କଥା ! ବିଚବଜାରରେ କଲ ।

କାନ୍ତ—ବିଚବଜାରରେ ? କେମିତି ?

ନର୍ମଦା—ଲୁଗା ଦୋକାନୀ, ଗହଣା ଦୋକାନୀ ହାତରେ । କାହିଁକି ଆଗରୁ କହିଲ ନାହିଁ ମୋତେ ?

କାନ୍ତ—ଓଃ, ବୁଝିଲି । ଆଗରୁ କହିଥିଲେ କେବଳ ବଜାରକୁ ଯିବାର ଗାଡ଼ିଭଡ଼ା ଛଡ଼ା ବିଶେଷ କିଛି ଲାଭ ହୋଇ ନ ଥାନ୍ତା । କାରଣ, ଯେଉଁ ସ୍ତ୍ରୀଲୋକର ଆତ୍ମସମ୍ମାନ ଜ୍ଞାନ ଏତେ ବେଶୀ ଯେ, ସ୍ୱାମୀର ଅର୍ଥକୁ ଅନାଇ ବ୍ୟୟ କରେ ନାହିଁ, ବ୍ୟୟର ହାର ବଢି ଗଲେ ଅବାଧରେ କରଜର ଗଭୀର ଆବର୍ତ୍ତ ଭିତରକୁ, ସେ ସ୍ତ୍ରୀର ଅପମାନ ବୋଧର ସୀମା ନିରୂପଣ କରିବା ଅନ୍ୟ କୋଉ ଜାତିର ସ୍ୱାମୀ ପକ୍ଷରେ କଷ୍ଟକର ନ ହେଲେ ସୁଦ୍ଧା ମୋ ଭଳି ଅନୁନ୍ନତ ଓଡ଼ିଆ ଜାତିର ସ୍ୱାମୀ ପକ୍ଷରେ ଦୁରୂହ ବ୍ୟାପାର ।

ନର୍ମଦା—ତୁମର ଲଜ୍ଜା ନାହିଁ ମିଥ୍ୟାବାଦୀ ।

କାନ୍ତ—ମିଥ୍ୟାବାଦୀ ହୋଇଥିଲେ ଖାତୀ ପିନ୍ଧୁଥାନ୍ତି ତୁମ ପରି ଏବଂ ଲଜ୍ଜାରେ ମୁହଁ ଢାଙ୍କୁଥାନ୍ତି ।

ନର୍ମଦା—ଏପରି ନିର୍ଲ୍ଲଜ ମିଥ୍ୟାବାଦୀ ଏବଂ ତା ଉପରେ ନିର୍ବୁଦ୍ଧି। ଯାଙ୍କର ଆୟ ଅପେକ୍ଷା ମୁଁ ବ୍ୟୟ କରୁଛି ବେଶୀ । ତୁମର ଦରମା କେତେ ?

କାନ୍ତ—ଷ୍ଟରିଶ ଟଙ୍କା ।

ନର୍ମଦା—ମୋତେ ଦେଉଛ କେତେ ?

କାନ୍ତ—କୁଇଶ ।

ନର୍ମଦା—ତେବେ ?

କାନ୍ତ—ତେବେ ? ଏଥିରୁ ଯଦି ବୁଝ ତୁମର ଏବଂ ମୋର ଚଳିବା ସକାଶେ ପ୍ରକୃତ ପକ୍ଷରେ ମୋର ଆୟ କୁଇଶ ଟଙ୍କା ନୁହେଁ, ତାହା ହେଲେ ନିବୁଦ୍ଧିତାର ନିଦର୍ଶନ ଦେଖିବା ପାଇଁ ଆଖି ମୋ ଆଡକୁ ନ ବୁଲାଇ ବିପରୀତ ଦଗରେ ବୁଲାଇବାକୁ ହେବ । ଅନ୍ୟ କୁଇଶ ବାବା ଓ ମାଙ୍କର । ପ୍ରତି ମାସରେ ଯେଉଁ ଦିନ ଏ କୁଇଶ ଟଙ୍କା ଆମ ଘରକୁ ଆସେ, ସେ କୁଇଶ ବାବା ଓ ମା'ଙ୍କ ପାଖକୁ ଯାଏ । ତେବେ, ଏ ଘର ଆଉ ସେ ଘର ଭିତରେ ତଫାତ୍ ଏତିକି ଯେ, ଏ ଘରେ କୁଇଶ ଟଙ୍କା ଆୟ ଉପରେ ବ୍ୟୟ ହୁଏ ତିନିଶ ଟଙ୍କା, ଆଉ ସେ ଘରେ—ଛାଡ଼ ସେ ଘର କଥା, ତା ଏଠି ଅବାନ୍ତର ।

ନର୍ମଦା—ଆହା, ଏପରି ଯଦି ବାପମାର ସୁଶୀଳ ଆଉ ବାଧ ସନ୍ତାନ, ତାହା ହେଲେ ମୋ ସାଙ୍ଗରେ ଏ ଘରକୁ ଅସିଲ କେମିତି ?

କାନ୍ତ—ସେମାନଙ୍କ କଥାରେ ।

ନର୍ମଦା—ବେଶ୍ । ମୋର କିନ୍ତୁ ଇଚ୍ଛା ନାହିଁ କୌଣସି ବିଷୟରେ ତୁମ ବାପମାର ଅନୁଗ୍ରହ ଉପଭୋଗ କରିବାକୁ । ବର୍ତ୍ତମାନ ଯେତେବେଳେ ବୁଝୁଛି,

ତୁମର ସର୍ଗସୁଖ ମୁଁ ଉପଭୋଗ କରୁଛି ତୁମର ବାପମାର ଅପରିସୀମ ବଦାନ୍ୟତା ସକାଶୁ, ମୋର ଆଉ କ୍ଷଣ ମାତ୍ର ସେ ସର୍ଗସୁଖ ଭୋଗ କରିବାକୁ ଇଛା ନାହିଁ ।

କାନ୍ତ—ତେବେ ରହିବ କୋଉଠି ?

ନର୍ମଦା— କାହିଁକି ? ମୁଁ କଣ ହାଓଆରୁ ଉଡିଆସିଛି କି'ତୁମ ଘରକୁ ? ତୁମର ବାପମା ଥିଲେ, ମୋର କଣ ନାହାନ୍ତି !

କାନ୍ତ—ବେଶ, ବେଶ୍; ମୁଁ ଦେଖୁଛି ସୁଶୀଲ ବାଧ୍ୟ ସନ୍ତାନ ହେବାର ଏକଚାଟିଆ ଅଧିକାର କେବଳ ମୋର୍ ଏକଲା ନାହିଁ । ତେବେ, ଏହି ବାଧତାର ନିଦର୍ଶନ କେବେ ଦେଖାଇବାକୁ ମନଃସ୍ଥ କରିଛ ?

ନର୍ମଦା—ଆଜି ସାତ ଘଣ୍ଟା ମଧ୍ୟରେ । ଡ୍ରାଇଭରକୁ କୁହ, ଗାଡ ଡ଼ାକି ଦେଉ, ମୁଁ ପୁରୀ-ଏକସପ୍ରେସ୍‌ରେ କଲିକତା ଯିବି ।

କାନ୍ତ—ଯେ କଲିକତା ନିଜେ ଯାଇପାରେ, ସେ ଡ୍ରାଇଭରକୁ ଗାଡ ଆଣି-ବାକୁ କହିବା ବିଷୟରେ ଅନ୍ୟର ସାହାଯ୍ୟ ଅପେକ୍ଷା କରେ ନାହିଁ ।

ନର୍ମଦା—ତାଇ ହେଲା ।

ଅଳ୍ପ ସମୟ ପରେ ଗାଡ ଆସି ଫାଟକ ପାଖରେ ଛିଡ଼ା ହେଲା । ନର୍ମଦା ଘଣ୍ଟାକ ଭିତରେ ସଜଡ଼ା ସଜଡ ହୋଇ ଗାଡରେ ପଶିଲା । କାନ୍ତ ଆସି ତାର ହାତ ଧରି କହିଲା,"ନମ,'ଏକି ପାଗଲାମି ?" ନର୍ମଦା କହିଲା,"ପାଗଲାମି ଧରି ନ ଥିଲେ ମୁଁ ତମର ହାତ ଧରି ନ ଥାନ୍ତି । ହାତ ଛାଡ଼, କାଠିଛି; ସ୍ତ୍ରୀମି କରିବାକୁ ହେବ ନାହିଁ ।"

ଶେଷୋକ୍ତ କଥା ଶୁଣି କାନ୍ତ ସର୍ପାହତର ପରି ହାତକୁ ଉଠାଇ ନେଲା । ଗାଡ ଭିତରୁ ଅବାଜ ହେଲା,'ଏ ଗାଡୱ୍ୟାନ୍ ,ଗାଡ ହାଁକୋ ।' ଗାଡ ଚାଲିଗଲା; କାନ୍ତକୁ ଛାଡଗଲା ବିସ୍ମୟର ଆବର୍ତ୍ତ ଯେଉଁଟି ଅତଳସ୍ପର୍ଶ, ତାରି ମଧ୍ୟରେ ।

——°*°——

# ବିବାହ ରହସ୍ୟ

## [ ଏକ ]

୧ ମାର୍ଚ୍ଚ, ୧୩.

ବାଟ ଉପରେ ଯେଉଁ ଛୋଟ ଘରଟି ଦେଖୁଛ, ଛୋଟ ହେଲେ କଣ ହେବ, ଭିତରକୁ ଗଲେ ଦେଖିପାରିବ, ଘରଟି ଆଧୁନିକ ରୁଚି ଅନୁଯାୟୀ ସଜ୍ଜିତ । ଦାଣ୍ଡଘର ବା ବୈଠକଖାନାର ଦାଣ୍ଡଆଡ଼ର ଝରକା ଦୁଇଟି ପରଦାରେ ଅର୍ଦ୍ଧମୁକ୍ତ, ଅର୍ଦ୍ଧ ଆବୃତ । ଏହି ଦୁଇ ଝରକା ମଝିରେ ଦାରକା ମଧ ସେହିପରି ସଜ୍ଜିତ । ଘର ଭିତରେ ଗଦିଲଗା ଚଉକି ଦୁଇଟି, ଦୁଇଟି ସୋଫା ଓ 'ସେଟି', ଗୋଟିଏ ସୁନ୍ଦର ଛୋଟ ମେଜ ଓ ଗୋଟିଏ ଟେବୁଲ ହାରମୋନିୟମ । ମେଜ ଉପରେ ଫୁଲସହ ଫୁଲଦାନି । ବୈଠକଖାନାର ଡାହାଣ ପାଖର କୋଠରି ଶୋଇବା ଘର, ବାଁ ପାଖରେ ଅଫିସ ବା ପଢିବା ଘର । ବାଡଆଡ଼ ବରଣ୍ଡାରେ ପଡିଥିବା ମେଜରେ ଖିଆପିଆ ହୁଏ । ବାଡ ବରଣ୍ଡାର ଉଭୟ ପାର୍ଶ୍ୱରେ ଛୋଟ ଛୋଟ ଦୁଇଟି ଘର ଅଛି । ଏଥିରୁ ଗୋଟିଏ ଗୋସଲଖାନା ।

ଘରର କର୍ତ୍ତା ନୂଆ ବାବୁ ହୋଇଛନ୍ତି—ପ୍ରାୟ ମାସେ ହେବ । ବେଳ ସକାଳ ସାତଟା, ଜଳଖିଆ ଖାଇବା ସମୟ ।

## ଶବାନ୍ଧ ରହସ୍ୟ

ସରଳାର ସ୍ୱାମୀ ପ୍ରାୟ ଅଧଘଣ୍ଟାଏ ହେଲା ଗୋସଲଖାନା ଭିତରକୁ ଯାଇଛନ୍ତି । ସରଳା ଖାଇବାର ସମସ୍ତ ସରଞ୍ଜାମ ରଖି ମେଜ ପାଖରେ ଉଦ୍‌ବଗ୍ନ ହୋଇ ବସିଛି ଏବଂ ଗୋସଲଖାନା ଆଡ଼କୁ ଥରକୁ ଥର ସତୃଷ୍ଣ ନୟନରେ ଅନାଉଛି । କିଛିକ୍ଷଣ ପରେ ଗୋସଲଖାନାର କବାଟ ଫିଟିବାର ଉପକ୍ରମ ହେଲା । ସରଳା ଗୋସଲଖାନା ଆଡ଼କୁ ଉଠିଗଲା । ଭିତରୁ ବାବୁ ଅସ୍ତନ୍ୟସ୍ତ ପୋଷାକ ପରିହିତ ହୋଇ ବ୍ୟସ୍ତଭାବରେ ବାହାରି ଆସିଲେ ଏବଂ ତାହାଙ୍କ ହାତରେ ସରଳାର କଟିଦେଶ ବେଷ୍ଟନ କରି ମୃଦୁମନ୍ଥର ଗତିରେ ଉଭୟେ ମେଜ ଆଡ଼କୁ ଅଗ୍ରସର ହେଲେ ।

ବାବୁ କହିଲେ, "ସରଳା, ଯେମନ୍ତ କେତେ ବର୍ଷ ହେଲା ମୁଁ ତୁମ ପାଖରେ ନ ଥିଲି ।"

ସରଳା—ଆଚ୍ଛା, ସକାଳୁ ଉଠି ନ ଗାଧୋଇଲେ ଅବା ଖିଅର ନ ହେଲେ କଣ ଚଳିବ ନାହିଁ ? ପୁରୁଷମାନଙ୍କର ରୋଜ ରୋଜ ଖିଅର ହେବା ଗୋଟାଏ କି ଭଳି, ତେଣିକି ପୁଣି ଏତେବେଳ ଯାଏ ! ତୁମେ ଯଦି ଏତେବେଳ ଯାଏ ଖିଅର ହେଉଥିବ, ମୁଁ ଅଉ କଣ କରିବି ?

ବାବୁ—କଣ କରିବ ?

ସରଳା—ମୁଁ ଭାବୁଥିଲି, ଭଲା ଇମିତି ଟେଲିଫୋନ ଭଳିଆ ଗୋଟାଏ ତାର ଆଣନ୍ତା ଯେ, ମୁଁ ତାକୁ ଗୋସଲଖାନାରେ ଲଗାଇ ଦିଅନ୍ତି ଏବଂ ତୁମେ ଯେଉଁ ଯେଉଁ ଆଡେ ଯାନ୍ତ, ସେ ସବୁ ଜାଗାରେ ଲଗାଇ ଦିଅନ୍ତି । ତାହା-ହେଲେ ସବୁବେଳେ ତୁମ ସାଙ୍ଗରେ କଥା କହୁଥାନ୍ତି ।

ବାବୁ—ବାଃ, ବଡ଼ first class idea ! ପ୍ରସ୍ତାବଟା ମନ୍ଦ ନୁହେଁ । ସରଳା, ଏ ପୁଣି ଗୋଟାଏ କଣ ନୂଆ ରକମର ମୁଣ୍ଡବନ୍ଧା ?

ତତ୍‌କ୍ଷଣାତ୍ ସରଳା ସ୍ମିତମୁଖରେ କହିଲା, "ଏ କଣ ତୁମ ଆଖିରେ ପଡ଼ିଲାଣି ? ମୁଁ ସକାଳୁ ଉଠି ବେଳ ପାଇଲି ନାହିଁ ବୋଲି ଯେମିତି ସେମିତି ଟିକେ ସଜାଡ଼ି ନେଇଛି ।"

ସରଳା ପଚାରିଲା, "କଣ ଚାହା ଖାଇବ ନାହିଁ ? ସବୁ କଥା ପାଣି ହୋଇଗଲାଣି; ମୁଁ ଯାଏ ଟିକିଏ ଗରମ କରି ଆଣେ ।"

ବାବୁ କେବେହେଲେ ଥଣ୍ଡା ଚାହା ଖାଆନ୍ତି ନାହିଁ; କିନ୍ତୁ କହିଲେ, "କିଛି ଆବଶ୍ୟକ ନାହିଁ । ଥଣ୍ଡା ଚାହା ମୋତେ ଖରାପ ଲାଗେ ନାହିଁ, ତୁମେ ବସ ।"

ସରଳା କହିଲା, "ରୁଟିଗୁଡ଼ାକ ବାସି, କାଲି ଓପର ଓଳିର ଟୋଷ୍ଟ କରା । ମୁଁ କାଲି ରୁଟି କିଣିବାକୁ ଭୁଲି ଯାଇଥିଲି । ଯଦି ରୁଟି ଖାଇ ନ ପାରିବ, ମୁଁ ଯାଏଁ ଗୋଟାଏ ଡିମ୍ବ ସିଝାଇ ଆଣେ ।"

ବାବୁ ଜୀବନରେ କେବେ ପର୍ଯ୍ୟୁଷିତ ଖାଦ୍ୟ ଭୋଜନ କରି ନାହାନ୍ତି; କିନ୍ତୁ ବର୍ତ୍ତମାନ ଆହ୍ଲାଦରେ ଏହି ବାସି ରୁଟି ଖାଉ ଖାଉ କହିଲେ, 'ଚିନ୍ତା ନାହିଁ, ତୁମେ ମୋ ପାଖରେ ବସିଥିଲେ ଯଥେଷ୍ଟ । ତା ପରେ ବାଁହାତରେ ସରଳାର ଚିବୁକ ଧରି କହିଲେ, "ବାସି, ସଜ, ସବୁ ମୋ ପାଖରେ ସମାନ; କେବଳ ଏହି ସଜ ସରୋଜିନୀ ସର୍ବଦା ମୋ ନିକଟରେ ପ୍ରସ୍ଫୁଟିତ ଥିଲେ ହେଲା ।'

ସରଳା ଆବେଶ-ଅଳସ ନେତ୍ରପକ୍ଷ୍ମ ଉତ୍ତୋଳନ କରି କହିଲା, "ଆସନ୍ତା ବର୍ଷ ଏହି ସମୟରେ କଣ ଏହି ସରୋଜିନୀ ତୁମ ନିକଟରେ ସଜ ଥିବ ?"

କ୍ଷଣକ ନିମିତ୍ତ ବାବୁଙ୍କ ଆଖିରେ ଚିନ୍ତାର ଗାଢ଼ଛାୟା ପଡ଼ିଲା । ଉଦ୍ଦୀପ୍ତ-ଯୌବନା ଲାବଣ୍ୟମୟୀ ଏହି ପ୍ରେମପିତୁଳା ତାଙ୍କର ନିଜସ୍ୱ । ପ୍ରଣୟ ସଞ୍ଚାରର ପ୍ରଥମ ଉତ୍ତେଜନାରେ, ଉଦ୍‌ବାହର ପ୍ରଥମ ଆବେଗରେ ସେ ଏହି ଅସନ୍ତା

ବର୍ଷର କଥା ଭ୍ବ ନ ଥିଲେ । ତାଙ୍କର ଏ ପ୍ରେମରେ ଭବଷ୍ୟତ୍ ନାହିଁ, ସମସ୍ତ ବର୍ତ୍ତମାନ । ଏ ପ୍ରେମରେ ଭ୍ବୀ ଭ୍ବନା ନାହିଁ, ଅଛି କେବଳ ବର୍ତ୍ତମାନର ଉପଭୋଗ । ସେଥିପାଇଁ ସରଳାର ଏ ପ୍ରଶ୍ନର ଆକସ୍ମିକତା ତାଙ୍କୁ କ୍ଷଣକ୍ଷଣ ଅଭିଭୂତ କରଦେଲା । ତଥାପି ପରକ୍ଷଣରେ ସେ ଯେଉଁ ଗମ୍ଭୀର ଉତ୍ତର ଦେଲେ, ସେଥିରେ ଅସତ୍ୟର ଆଭାସ ନ ଥିଲା । ବାବୁ କହିଲେ, "ହଁ,ଆସନ୍ତା ବର୍ଷ, ବର୍ଷବର୍ଷାନ୍ତର, ମୋର ସମସ୍ତ ଜୀବନ ଏ ସରୋଜନୀ ମୋ ନିକଟରେ ସଜ ଥିବ ।"

ପ୍ରଗାଢ ପ୍ରେମର ଏ ଆଶ୍ୱାସ ବାଣୀ ଶୁଣି ସରଳାର ଆଖିରୁ ଦୁଇଟି ମୁକ୍ତାବିନ୍ଦୁ ଝରି ପଡ଼ିଲା । ତା ପରେ ଗମ୍ଭୀରଭ୍ବ ପରିତ୍ୟାଗ କରି ହସି ହସି ବାବୁ ପଚାରିଲେ, "କାହିଁକି, ଏ ସରୋଜନୀର ବାସି ହେବାର କଣ କିଛି ଆଶଙ୍କା ଅଛି ?"

ସରଳା ସ୍ୱାମୀଙ୍କ ହାତ ଧରି କହିଲା,"ଯେତେ ଦିନ ଏ ସୁଖସୂର୍ଯ୍ୟ ଉଦୀୟମାନ, ସେତେ ଦିନ ଏ ସରୋଜନୀ ପ୍ରଫୁଲ୍ଲ ।"

ବାବୁ—ନଚେତ୍...

ସରଳା—ନଚେତ୍ ସୂର୍ଯ୍ୟ ମେଘାବୃତ ହେଲେ ସରୋଜନୀ ମ୍ଳାନମୁଖୀ ।

ବାବୁ—ଆଉ ଯଦି ସୂର୍ଯ୍ୟ ଅସ୍ତଗମନ କରେ ?

ସରଳା—ସରୋଜନୀ ବୃନ୍ତଚ୍ୟୁତ ।

ତହିଁ ଉତ୍ତାରୁ ବାବୁ ସ୍ୱର ପରିବର୍ତ୍ତନ କରି ହସି ହସି କହିଲେ, "ବର୍ତ୍ତମାନ ସୂର୍ଯ୍ୟର ଅସ୍ତଗମନର ଭୟ ନାହିଁ । ଭୁଟି ଖାଇ ଗଲା ଶୁଖିଗଲା, ଦିଅ ଟିକେ ଗୁହ୍ମା ତାଳ ।"

ସରଳା ଗୁହ୍ମା ତାଳୁ ତାଳୁ କହିଲା, "ହଇହୋ, ଆଜି କେଉଁ ତାରିଖ, ତା ମନେ ଅଛି ତ ?"

ବାବୁ—ଆଜି ? କାହିଁକି, ଆଜି ତ ମାର୍ଚ୍ଚ ଏକ ତାରିଖ ।

ସରଳା—ଆଉ କଛି ନୁହେଁ ?

ବାବୁ—ଆଉ କଣ ?

ସରଳା—ଆଜି ତୁମର ଜନ୍ମଦନ ।

ବାବୁ—ଆଷାଢମାସରେ ନଈ ବଢୁଛି ନା ଆପଣା ଗୋଇ ଆପେ କାଢୁଛି ! ତୁହା ତ ହୋଇପାରୁ ନାହିଁ ଅଜି ମୋର ଜନ୍ମଦନ, ସେଥିପାଇଁ ପସ୍ତ ଇଙ୍ଗିତ ହେଉଛି ଆଜି ତୁମର ଜନ୍ମଦନ ।

ସରଳା—ନା, ନା, ମୋ ଜନ୍ମଦନ କଥା ତୁମ୍ଭର ମନେ ଅଛି କି ନାହିଁ ମୁଁ ପରୀକ୍ଷା କରୁଥିଲି ନା । ଜଣାଗଲା ଯେ ।

ବାବୁ—କଣ ଜଣାଗଲା ?

ସରଳା—ତୁମର ମନେ ନାହିଁ ।

ବାବୁ—ମନେ ନାହିଁ ବୋଲି ଜାଣିଲ କେମିତ ?

ସରଳା—ସେଥିପାଇଁ ପସ୍ତ ପଚସ୍ତ ହେଉଥିଲ, ଆଉ କଣ ?

ବାବୁ ପକେଟରୁ ଗୋଟିଏ ଭେଲ୍‌ଭେଟର ଗହଣା ବାକ୍ସ କାଢି କହିଲେ, “ମନେ ନ ଥିଲା ତ ଏ କଣ ?”

ସରଳା ବାକ୍ସ ହାତକୁ ନେଇ କହିଲା, “ଏ କଣ ମୋ ପାଇଁ ?”

ବାବୁ—ମୁଁ କଣ ଅଜି ଦନ ଭୁଲିପାରିବ ?

ହାସ୍ୟୋତ୍‌ଫୁଲ୍ଲ ମୁଖରେ ବାକ୍ସ ଫିଟାଇ ତହିଁରୁ ଗୋଟିଏ ସୁନାର ହାର ନେଇ ସରଳା କହିଲା, “ଏହା ପାଇଁ ତ ଅନେକ ଟଙ୍କା ଦେବାକୁ ପଡିଥିବ ?”

ବାବୁ—ତା ପଡିଛି ।

ସରଳା—ଅଚ୍ଛା, ମୋତେ କଣ ପ୍ରତିବର୍ଷ ଏମିତ ଗୋଟାଏ ଗୋଟାଏ ଉପହାର ଦେଉଥିବ ?

ବାବୁ କିଛେ ଅପ୍ରତିଭ ହୋଇ କହିଲେ, “ତା କିଏଣ ଆଉ ଦେଇ-ପାରିବ ? ତେବେ ତୁମେ ମୋର, ଅଉ ମୋର ଯାହା, ସେ ସବୁ ତୁମର ।

ଆସ, ହାରକୁ ତାର ସ୍ଥାନ ଅଧିକାର କରିବାକୁ ଦିଅ ।'' ଏହା କହି ସରଳାର ଗଳାରେ ଉକ୍ତ ହାର ଲମ୍ବାଇ ଦେଲେ । ସୋହାଗିନୀ ତତ୍‌କ୍ଷଣାତ୍ ବରନ୍ଦାରେ ଲଟକା ହୋଇଥିବା ଅଇନା ପାଖକୁ ଯାଇ ହାରର ସୌନ୍ଦର୍ଯ୍ୟ ଓ ତତ୍କଳିତ ନିଜର ସୌନ୍ଦର୍ଯ୍ୟ ଦେଖିବାକୁ ଲାଗିଲା । ତଦନନ୍ତର ଫେରି ଆସି କହିଲା, 'ଦେଖ କେମିତି ଜଳୁଛି ପଥ !'

ବାବୁ—ଓଃ, ସତେ ତ ! ଅନ୍ଧାର ରାତିରେ ତୁମେ ଛଅ କୋଶ ଦୂରରେ ଥିଲେ ମୁଁ ଏହାର ଆଲୁଅ ଦେଖି ତୁମକୁ ଚିହ୍ନିନେବି ।

ଗହଣାର ପ୍ରଥମ ମୋହ କଟିଯିବା ପରେ ସରଳା ସ୍ୱାମୀଙ୍କୁ କହିଲା, 'ମୁଁ ଏ ସବୁର ଅଭିଳାଷିଣୀ ନୁହେଁ, କେବଳ ଏ ହୃଦୟର ସ୍ନେହ ବିନ୍ଦୁଟି ମୋର ଯଥେଷ୍ଟ ।'

[ ଦୁଇ ]

୧ ମାର୍ଚ୍ଚ ୧୪

ପୂର୍ବବର୍ଣ୍ଣିତ ଘଟନା ବର୍ଷେ ହେଲା ଅତୀତ ହୋଇଅଛି । ବର୍ତ୍ତମାନ ଏ ଗୃହର ସେ ପ୍ରକାର ନୂତନତ୍ୱ ନାହିଁ । ନୂତନତାର ଝକଚକ୍ୟ ଯେପରି ସମସ୍ତ ବିଷୟରୁ ଟିକେ ଟିକେ ଉଠିଯାଇଛି । ବାସନ ପ୍ରଭୃତି ପରିଷ୍କୃତ ହୋଇ ଟେବୁଲ୍ ଉପରେ ସଜା ହୋଇଅଛି । ବାବୁ ପୂର୍ବୋକ୍ତ ବରନ୍ଦାର ମେଜ ପାଖରେ ପ୍ରାତର୍ଭୋଜନ ନିମିତ୍ତ ବସିଛନ୍ତି । ଯଦିବା ସ୍ଥୂଳଦୃଷ୍ଟିରେ ବାବୁଙ୍କର ସେ ପ୍ରକାର କୌଣସି ବିଶେଷ ପରିବର୍ତ୍ତନ ଲକ୍ଷିତ ହେଉ ନାହିଁ, ତଥାପି ସୂକ୍ଷ୍ମ ଭାବରେ ଦେଖିବାକୁ ଗଲେ ଅନେକ ପରିବର୍ତ୍ତନ ଲକ୍ଷିତ ହେବ । ଆପାତତଃ ମୁଦିକ ପୂର୍ବ ପରି ବଳିଷ୍ଠ ଓ ପରିଷ୍କୃତ ପରିଚ୍ଛଦ ପରିହିତ; କିନ୍ତୁ ପୂର୍ବପରି ପୋଷାକ ପିନ୍ଧିବାରେ ସେ ପ୍ରକାର ଯତ୍ନ ଓ ନିଷ୍ଠା ନାହିଁ । ବର୍ତ୍ତମାନ ଦୁଇ ଦିନରେ ଥରେ କ୍ଷୌର କାର୍ଯ୍ୟ କଲେ ଯଥେଷ୍ଟ । ବର୍ତ୍ତମାନ କାର୍ଯ୍ୟକୁ ଯିବା ପାଇଁ ବାବୁ ପ୍ରସ୍ତୁତ । ସକାଳର ଖବରକାଗଜ ଖାଇବା ମେଜ ପାଖରେ ବସି ଆଦ୍ୟ ପ୍ରାନ୍ତ

# ସାମୟିକ

ସବୁ ପଡ଼ି ସାରିଲେଣି । ବଡ଼ ବ୍ୟସ୍ତ ହେଲା ପରି ଜଣାପଡ଼ୁଛି ଏବଂ ସାମାନ୍ୟ ଭାବରେ ବିରକ୍ତ ହେଲା ପରି ମଧ୍ୟ ଦେଖାଯାଉଛି । କିଛିକ୍ଷଣ ପରେ ବାବୁ ରନ୍ଧା-ଘର ଆଡ଼କୁ ଯାଇ ଡାକିଲେ, 'ସରଳା, ଟିକିଏ ଶୀଘ୍ର କର ।'

ପୂର୍ବ ଅପେକ୍ଷା ଯେ ବାବୁଙ୍କର ପ୍ରେମ ଊଣା ପଡ଼ିଛି, ତାହା ନୁହେଁ । କିନ୍ତୁ ସେତେବେଳେ ସେ ସଦ୍ୟ ପରିଣୀତ, ବର୍ତ୍ତମାନ ବିବାହ ଦିନରୁ ବର୍ଷେ ଗଡ଼ିଗଲାଣି । ବର୍ତ୍ତମାନ ପରର ଚାକିରିଆ, ବିଳମ୍ବ ହେଲେ ଚଳିବ ନାହିଁ । ଘରର ବିଷୟ, ସ୍ତ୍ରୀର ପ୍ରୟୋଜନୀୟ ଓ ସୌଖୀନ ସମସ୍ତ ବିଷୟ ଏବଂ ନିଜର ଭବିଷ୍ୟତ୍, ସବୁ ତାଙ୍କର ଏହି ଦୈନନ୍ଦିନ ଚାକିରି ଉପରେ ନିର୍ଭର କରେ ।

ସରଳା ସ୍ୱାମୀର ସ୍ୱର ଶୁଣି ରନ୍ଧାଘରୁ ବାହାରି ପଡ଼ି କହିଲା, 'ଯାଉଛି, ଯାଉଛି, ଟିକିଏ ଥୟ ଧର ।'

ସରଳା ଦିଶୁଛି ପୂର୍ବାପେକ୍ଷା ଅଧିକ ସୁନ୍ଦରୀ । ଏ ସୌନ୍ଦର୍ଯ୍ୟ କେବଳ ଶାରୀରିକ ନୁହେଁ, ଭୌତିକ ଜଗତର ଉତ୍ତେଜକ ନୁହେଁ, ସୁଖାବହ; କିନ୍ତୁ ମାନସ ଚକ୍ଷୁରେ । ସଂସାରରେ ନିଜର ସ୍ଥାନ କଣ, ତାହା ସେ ଜାଣିପାରିଛି । ବିବାହର ଅଦ୍ୟ ଦିନରେ ଜୀବନ ଯେ ପ୍ରକାର ମହୋତ୍ସବମୟ, ଯେ ପ୍ରକାର କଳ୍ପନାର ପରୀରାଜ୍ୟ ପରି ବୋଧ ହେଉଥିଲା, ବର୍ତ୍ତମାନ ଆଉ ତାହା ନାହିଁ । ବୈବାହିକ ଜୀବନର ଏକ ବର୍ଷର ଅଭିଜ୍ଞତା, ବାସ୍ତବ ଜଗତର ଘାତପ୍ରତିଘାତ ଜୀବନରେ ଏକ ନବୀନ ସୌନ୍ଦର୍ଯ୍ୟ ଆଣିଛି । ଯଦିବା ବର୍ତ୍ତମାନ ସେପରି ମୁହୂର୍ତ୍ତକୁ ସରସ ପ୍ରଣୟ ସମ୍ଭାଷଣ ନାହିଁ, ଯଦିବା ସେପରି ରହସ୍ୟମୟ ଭାବ ବିନିମୟ ନାହିଁ, ତଥାପି ଉଭୟଙ୍କର ପ୍ରକୃତ ପ୍ରଣୟ ପ୍ରଗାଢ ହୋଇଛି—କେବଳ ବାକ୍ୟାଡ଼ମ୍ବରରେ ତାକୁ ପ୍ରକାଶ କରିବାର ଇଚ୍ଛା ଊଣା ପଡ଼ିଛି ।

ପୁଣି ବାବୁଙ୍କର ଡାକ ଶୁଣି ସରଳା ରନ୍ଧାଘରର ଦୁଆର ମୁହଁରୁ କହିଲା, 'ଟିକିଏ ରହ, ହେଲା ଆସି । ତୁମେ ଯାଇ ମେଜ ପାଖରେ ବସ; ମୁଁ ସବୁ ନେଇ ଯାଉଛି ।'

ତା ପରେ ସରଳା ଖାଇବା ଜିନଷ ଆଣି ମେଜ ଉପରେ ରଖିଲା । ବାବୁ ମଧ୍ୟ ଖାଇବାକୁ ଆରମ୍ଭ କଲେ । ଖାଉ ଖାଉ ବାବୁ କହିଲେ,'ତରକାରୀ ଅଲଣା ହୋଇଛି, ଭାତ ବି ଟିକିଏ କାଉ ହୋଇଛି । ତୁମେ ଯଦି ଟିକେ ନଜେ ନ ଦେଖିବ, କେବଳ ଗୁଳକର ଉପରେ ନିର୍ଭର କରିବ,ତେବେ ଚଳିବ କେମିତି ? ଜାଣ ତ, ମୁଁ ବର୍ତ୍ତମାନ ଯାହା ଖାଇକରି ଯିବ, ପୁଣି ଯାଇ ସ୍ତତରେ ଗଣ୍ଡାଏ । ତୁମେ ସଦାବେଳେ ଘରେ ଅଛ, ଏ ସବୁ କାମ ନ ଦେଖିବ ତ ହେବ କେମିତି ? ଦେଖ, ଏ ଓଳି ଯେମିତି ସେମିତି କଟିଲା, ଉପର ବେଳାଟା ଯେପରି ତଥୈବଚ ନ ହୁଏ; ସେଥିପାଇଁ ଟିକିଏ ଦିନରୁ ଯୋଗାଡ଼ କରିବ ।'

ସରଳା—ଆଜି ଦିନବେଳେ ମୋର ଅନେକ କାମ ଅଛି । ସଞ୍ଜବେଳ କଥା ଭାବିବାକୁ ହେବ ନାହିଁ, ସଞ୍ଜବେଳ ପାଇଁ ଅନ୍ୟ ଯୋଗାଡ଼ ।

ବାବୁ—କାହିଁକି, ଦିନବେଳେ ଆଉ କରିବ କଣ ?

ସରଳା—ତୁମ କୋଟର ବୋତାମ ଛିଣ୍ଡିଯାଇଛି, ସେଗୁଡ଼ାକ ସିଲାଇ କରିବାକୁ ହେବ; ଆଉ ଲୁଗାପଟା ସଜାଡିବାକୁ ମୁଣ୍ଡପୁଣ୍ଡ ବନ୍ଧାବନ୍ଧି କରିବାକୁ ହେବ ।

ବାବୁ ସରଳାର ପୃଷ୍ଠୋପରି ପତିତ କୁନ୍ତଳ ଦାମ ଦେଖି କହିଲେ,'ଏ ତ ବେଶ୍ ଅଛି, ମୁଣ୍ଡବନ୍ଧାର ଦରକାର କଣ ? ମୁଣ୍ଡବନ୍ଧା ପାଇଁ ଏତେ ତଡ଼ବଡ କାହିଁକି ?'

ସରଳା—କାହିଁକି ? ଆଚ୍ଛା, କଣ ଏମିତି ହୋଇ ସରକାରୀ ବଗିଚା, ଯୋବରା କାରଖାନା, ଧାନକଳ ଦେଖିବାକୁ ଯିବ ? ଏମିତି ହୋଇ କଣ ସ୍ତତରେ ବାପଘରକୁ ଯିବ ?

ବାବୁ—ସରକାରୀ ବଗିଚା, ଯୋବରା ଧାନକଳ, ବାପଘର, ସହରର ଏ କୋଣ ସେ କୋଣ ? ସ୍ତ୍ରୀ ମାନେ କଣ ?

## ସାମୟିକ

ମାନମୟୀ ସ୍ୱାମୀର କଥା ଶୁଣି ମୁଖ ଗମ୍ଭୀର କଲା । ଆଖିରେ ଲୁହ ଢଳ ଢଳ ହେଲା । ସ୍ୱର ପରିବର୍ତ୍ତନ କରି କହିଲା, "ତୁମେ ଆଜିର ଖବରକାଗଜ ପଢିଛ ?"

ବାବୁ—କାହିଁକି ? ଟିକିଏ ରହସ୍ୟ କରି କହିଲେ, ତୁମ କୃପାରୁ ଖାଇବା ଡେରି ହେବାରୁ ମୁଁ ତ ଆଜିର ଖବରକାଗଜ ଏ ମୁଣ୍ଡ ସେ ମୁଣ୍ଡ ପଢିସାରିଛି ।

ସରଳା—ତେବେ ତୁମେ ନିଶ୍ଚେ ଜାଣ ଆଜିର ତାରିଖ କଣ ? ଓହୋ, ଆଜି ଦିନ ବୁଲେଇ ନେବ ବୋଲି ଦୁଇ ଦିନ ତଳେ କହୁଥିଲ, ଏତେ ଚଞ୍ଚଳ ଭୁଲିଗଲ ? ଗଲା ବର୍ଷ ଆଜି ଦିନରେ ଭୁଲିବ ନାହିଁ ବୋଲି କେତେ ପ୍ରତିଜ୍ଞା । —ପୁଣି ଏତେ ଶୀଘ୍ର ବର୍ଷେ ନ ପୂରୁଣୁ ସବୁ ଭୁଲିଗଲ ? ଆଉ କିଛି କହି ନ ପାରି ଉଠିଯାଇ ବୈଠକଖାନାର କାଉଚ ଉପରେ ହାତଗୋଡ ଯୋଡି କାନ୍ଦିବାକୁ ଲାଗିଲା ।

ବାବୁ ଗୃହକାର୍ଯ୍ୟର ତାଡନାରେ ଓ ପେଟଜ୍ୱାଳାରେ ଆଜି ଯେ ମାର୍ଚ୍ଚ ଏକ ତାରିଖ, ସରଳାର ଜନ୍ମଦିନ, ତାହା ଏକାବେଳକେ ଭୁଲିଯାଇଥିଲେ । ଦୁଇଦିନ ତଳେ ସରଳାକୁ ତାହାର ଜନ୍ମଦିନରେ ସରକାରୀ ବଗିଚା, ଧାନକ୍ଷେତ ପ୍ରକୃତି ଦେଖାଇବାକୁ ନେବେ ବୋଲି କହିଥିଲେ । ତାହା ମଧ୍ୟ ଏ ତଡବଡରେ ଭୁଲିଯାଇଥିଲେ । ବର୍ତ୍ତମାନ ସରଳାକୁ କାନ୍ଦିବା ଦେଖି ଗୃହକର୍ତ୍ତା ଫାନ୍ଦରେ ଭୁଲିଲେ । ଉଠିଯାଇ ସସ୍ନେହରେ ହାତ ଧରି କହିଲେ, "ସରଳା, ଆଜି ତୁମର ଜନ୍ମଦିନ, କ୍ଷମାକର, କାର୍ଯ୍ୟର ଜଞ୍ଜାଳରେ ମୋର ଟିକିଏ ମନେ ନ ଥିଲା; ଆଉ କାଲୁ ଭୁଲିବି ନାହିଁ ।"

ଶ୍ରାବଣ ଆକାଶରେ ବିଦ୍ୟୁତ୍ ଚମକିଲା । ମାନମୟୀର ଅଶ୍ରୁସିକ୍ତ ଓଷ୍ଠାଧରରେ ହାସ୍ୟପ୍ରଭା ଫୁଟିଲା, ମାନଭଞ୍ଜନ ହେଲା । ଶେଷବେଳେ ମୁଣ୍ଡର ବାଳ ଆସି ମୁହଁ ଉପରେ ପଡିଥିଲା, ଦୁଇ ହାତରେ ତାକୁ ଦୁଇ ଆଡକୁ ଘୁଞ୍ଚାଇ ସରଳା ଛିଡା ହେଲା; ଆଉ ନିଜ ହାତରେ ସ୍ୱାମୀଙ୍କ ଗଳା ବେଷ୍ଟନ କରି ଅଶ୍ରୁସିକ୍ତ

ସ୍ମିତମୁଖରେ କହିଲା, "ମୁଁ କଣ ଭୁଲିବାକୁ ଚାହେଁ, ନା ଅଳଙ୍କାର ମାଗେ ? ତୁମର ସ୍ମୃତି ଯେମନ୍ତ ମୋର ସର୍ବସ୍ୱ; ମୋର ଶ୍ରେଷ୍ଠ ଅଭିଳାଷ, ମୋହର ସ୍ମୃତି ଯେଉଁପରି ତୁମ ମନରେ ଜାଗରୁକ ଥାଉ ।"

କିଛିତ୍କାଳ ପାଇଁ ସେହିପରି ଛିଡା ହୋଇ ଉଭୟେ ପ୍ରେମବିହ୍ୱଳ ନୟନରେ ପରସ୍ପରକୁ ନିରୀକ୍ଷଣ କଲେ । ସେ ନିରୀକ୍ଷଣରେ ଥିଲା ପ୍ରଣୟର ଅତୃପ୍ତ ପିପାସା, ପ୍ରଣୟୀର ଅନନ୍ତ ଆଶ୍ୱାସ ଏବଂ ଚିର ନିର୍ଭରତା ।

[ ତିନି ]

୧ ମାର୍ଚ୍ଚ ୧୯

ଆଉ ଥରେ ଆସ ବାଡ଼ଆଡ ବାରନ୍ଦାକୁ ଯିବା । ସେଠି ଅନେକ ପରିବର୍ତ୍ତନ ଘଟିଛି । ମେଜ ତଳେ ସାନ ପିଲାର ଦୁଇ ତିନିଟା ଖେଳନା ପଡ଼ିଛି, ଚଉକି ଉପରେ ସାନ ପିଲାର ଭିଲ୍ ମଉଜା ପଟେ ପଡ଼ିଛି, ବାଡ଼ ଦୁଆରରେ ବାଉଁଶ ଉପରେ ପିଲାର ଛୋଟ ଛୋଟ ଫ୍ରକ ଓ କନାପଟା ଶୁଖୁଛି । ପ୍ରଣୟ-ବୃକ୍ଷରେ ଫଳ ଫଳିଛି—ସରଳା ଦଶମାସର ଗୋଟିଏ ପୁତ୍ର ସନ୍ତାନର ମାତା । ପିଲାର ଡ଼ାକନାମ ଟୁନା ।

ବାବୁ ବ୍ୟସ୍ତଭାବରେ ଆସି ଖାଇବା-ମେଜ ପାଖରେ ବସିଲେ । ପରିଚ୍ଛଦ ଓ ଅନ୍ୟାନ୍ୟ ବିଷୟରୁ ଜଣାପଡ଼ୁଛି, ବାବୁଙ୍କର ଆର୍ଥିକ ଅବସ୍ଥା ପୂର୍ବ ଅପେକ୍ଷା ଟିକିଏ ସ୍ୱଚ୍ଛଳ । ମେଜ ଉପରେ ଚାକର ସବୁ ସଜାଇ ରଖିଛି । ଖାଦ୍ୟଦ୍ରବ୍ୟ ସଦ୍ୟସିଦ୍ଧ, ବାଷ ବାହାରୁଛି, ତେବେ କାହିଁକି ବାବୁଙ୍କ ମୁହଁ ଟିକିଏ ଶୁଖିଲା ଦିଶୁଛି ? ସେ ଥରକୁ ଥର ଶୋଇବା ଘର ଆଡ଼କୁ ଅନାଉଛନ୍ତି । ଅବଶେଷରେ ଖାଇବା ଯାଗାରୁ ଉଠିଯାଇ ଶୋଇବା ଘର କବାଟ ପାଖରେ ଛିଡ଼ାହେଲେ । ତା ପରେ କବାଟରେ ଧୀରେ ଧୀରେ ଠକ ଠକ କଲେ । ଉତ୍ତର ନାହିଁ । ପୁଣି ଶବ୍ଦ କଲେ, ଉତ୍ତର ନାହିଁ । ଧୈର୍ଯ୍ୟଚ୍ୟୁତ ହେଲା । ବାବୁ କବାଟ ପାଖରେ ଛିଡ଼ା ହୋଇ କହିଲେ, "ସର, କଣ ଏଣିକି ସବୁଦିନେ ଚାକର ମୋର ଖାଇବା

ବୁଝିବ ? ଭାତ ତରକାରୀ ଭଲ ଲାଗିଲେ ଆଉ ଗରମ ହେଲେ କଣ ଯଥେଷ୍ଟ ହେଲା ? ଏଣିକି ଖାଇବା ବେଳେ ତୁମକୁ ପାଇବା ଦୁଷ୍କର ।" ତା ପରେ ଧୀରେ ଧୀରେ କବାଟ ଫିଟାଇ ଭିତରକୁ ପଶିଲେ ।

ସରଳା—ଆସ୍ତେ, ଆସ୍ତେ !

ବାବୁ—କାହିଁକି ? କାହାକୁ ଡ଼ରିକରି ନା କଣ ? ଘର ମୋର ନା ତୁମାର ?

ସରଳା ଶିଶୁ ପାଖରେ ଥାଇ ହାତ ଠାରି କହିଲା, "ତୁମ ଗୋଡ଼ତଳେ ପଡ଼ୁଛ ଭଲା ଆସ୍ତେ ଆସ୍ତେ କହ ।" ତା ପରେ ସ୍ୱାମୀ ପାଖକୁ ଉଠି ଆସି କହିଲା, "ମୁଁ ତାକୁ ବଡ କଷ୍ଟରେ ଶୁଆଇଛି ।"

ବାବୁ—ଶୋଇବ ? ଏତେବେଳେ କାହିଁକି ଶୋଇବ ? ଏ ବେଳରେ ତ ତାର ଶୋଇବା ଉଚିତ ନୁହେଁ । ପିଲାଟି ଦିନରୁ ତୁମେ ତାକୁ ଏହିପରି ମନ୍ଦ ଅଭ୍ୟାସ ଶିଖାଇବ ଓ—

ସରଳା ଚଞ୍ଚଳ ସ୍ୱାମୀଙ୍କ ମୁହଁରେ ହାତ ଦେଇ କହିଲା, "ଦୟାକର ଭଲା ! ଯଦି କଥା କହିବ, ତେବେ ଏତେ ପାଟି କରନା, ଫୁସ୍ ଫୁସ୍ କରି କହ, ମୁଁ ଶୁଣୁଛି ।"

ବାବୁ ସରଳାର ଅନୁରୋଧ ଅନୁସାରେ ଧୀରେ ଧୀରେ କହିଲେ, "ଏହା ମୁଁ ସହିପାରିବି ନାହିଁ । ତୁମେ ଯେ ମତେ ଛାଡିଦେଇ ସବୁବେଳେ ତା ପଛରେ ଲାଗିଥିବ, ତାହା ହେବ ନାହିଁ । ଅଚ୍ଛା, ତୁମେ ମୋର ନା ତୁମାର ? ଆସ ।" ଏହା କହି ବାବୁ ସ୍ନେହରେ ସରଳାର ହାତ ଧରି ଶୋଇବା ଘରୁ ବାହାରି ଆସିଲେ । ସରଳା ଘରୁ ବାହାରିଲା ସ୍ତପ୍ତ ଶିଶୁ ଆଡ଼କୁ ଚାହିଁ ଚାହିଁ ଏବଂ ବାବୁଙ୍କୁ କହିଲା, "କବାଟକୁ ଆସ୍ତେ ଆସ୍ତେ ଆଉଜାଇ ଆଣ ।" ଅବଶ୍ୟ ସରଳା ନ କହିଥିଲେ ମଧ୍ୟ ବାବୁ ଯତ୍ନର ସହିତ କବାଟ ଦେଇଥାନ୍ତେ ।

ମେଜ ପାଖକୁ ଆସି ବାବୁ କହିଲେ, "ସର, ତୁମେ ଆଜିକାଲି ମୋ ଖାଇବାବେଳେ ଜମାରୁ ମୋ ପାଖରେ ବସୁ ନାହିଁ। ଯେଉଁଦିନ ଖାଇବାବେଳେ ତୁମେ ପାଖରେ ନ ଥାଅ, ସେଦିନ ମୋର ଭାତ ଜୀର୍ଣ୍ଣ ହୁଏ ନାହିଁ।"

ସରଳା ବାବୁଙ୍କ ଆଡ଼କୁ ଅନାଇ ସ୍ମିତମୁଖରେ କହିଲା, "ମୁଁ ଏହିକ୍ଷଣି ଯେତେବେଳେ ତାକୁ ଚୁମ୍ବ ଦେଲି, ସେ ମୋତେ ଅନାଇଲା। ମୁଁ ନିଶ୍ଚେ ଜାଣେ ସେ ମୋତେ ଚିହ୍ନିପାରୁଛି।"

ବାବୁ—ଯଦି ସେ ତୁମକୁ ନ ଚିହ୍ନିବ, ତେବେ ଜାଣ ଯେ ସେ ଗୋଟାଏ ନିତାନ୍ତ ଗଧ।

ସରଳା—ଦେଖ, ସେ ସବୁ କଥା ବୁଝୁଛି।

ବାବୁ—ନା, ନା, ଏଇକ୍ଷଣି କଣ କଥା ବୁଝିବ ?

ସରଳା କାନ ଡେରି କହିଲା, "ରହ ତ।"

ବାବୁ—କଣ ?

ସରଳା—ଝୁନା କାନ୍ଦିଲା ପରି ?

ବାବୁ ସରଳାର ହାତ ଧରି କହିଲେ, "ନା, ନା, ସ୍ୱାଇଁଆଣୀ ନାକ ଘୋଷୁଛି।"

ସରଳା—ମୁଁ ଯାଏଁ ଟିକେ ଦେଖି ଆସେ।

ବାବୁ—ନା, ନା, ତୁମେ ଯଦି ସଦାବେଳେ ପିଲା ଧରି ବସିଥିବ, ତେବେ ସେ ସ୍ୱାଇଁଆଣୀ ମାସକୁ ପାଞ୍ଚଟଙ୍କା ନେଉଛି କଣ ମାହାଲିଆ ? ତୁମ ସାଙ୍ଗରେ ମୋର କଥା ଅଛି।

ସରଳା—ଚଞ୍ଚଳ କହ।

ବାବୁ—ଆଜି ଦିନ ତିନିଟାବେଳେ ମୁଁ କଚେରୀରୁ ଆସିବି, ଆଉ ଆସିଲାବେଳେ ବାଟରୁ ଗାଡ଼ିନେଇ ଆସିବି।

ସରଳା—ଗାଡ଼ି କଣ ହେବ ?

# ସାମସ୍ତ୍ରିକ

ବାବୁ—ସରକାରୀ ବଗିଚ୍ଚ, କାରଖାନା ଓ ନଇକୂଳ ଅଡ଼େ ବୁଲିଯିବା ।

ସରଳା—ସେ ସବୁଆଡ଼େ କାହିଁକି ବୁଲିଯିବ ? ମୋର କଣ ଏବେ ବୁଲିବାକୁ ବେଳ ଅଛି ? ଯେବେ ବୁଲିଯିବ, ଝୁନାକୁ ଛାଡ଼ିଯିବ କାହା ପାଖରେ ? ଆଉ ମୁଁ ଏକୁଟିଆ ବୁଲି ଆସିଲେ ଝୁନା ମତେ କଣ କହିବ ?

ବାବୁ—ସର, କଣ ଭୁଲିଗଲଣି ? ଆଜି ପରା ମାର୍ଚ୍ଚ ଏକ ତାରିଖ, ତୁମର ଜନ୍ମଦିନ ? ମୁଁ ତୁମକୁ ନିଶ୍ଚେ ବୁଲେଇ ଆଣିବି ।

ସରଳା ନାରୀର ଶ୍ରେଷ୍ଠବସ୍ତୁ ମାତୃତ୍ୱ ଲାଭ କରିଛି । ଜୀବନର ଏହି ନବ-ପରିବର୍ତ୍ତନର ସମସ୍ତ ଆନନ୍ଦରେ ସେ ଉତ୍‌ଫୁଲ୍ଲ । ସରଳା ପ୍ରଣୟପ୍ରଫୁଲ୍ଲ ବଦନରେ ସ୍ୱାମୀଙ୍କ ଆଡ଼କୁ ଚାହିଁ କହିଲା, ''ବାଃ, ଯେଉଁ ଗାଡ଼ିଭଡ଼ା ବୁଲିବାରେ ଖର୍ଚ୍ଚ ହେବ, ସେହି ଖର୍ଚ୍ଚରେ ତୁମେ ଅଫିସରୁ ଆସିବା ବେଳେ ଝୁନା ପାଇଁ ଖେଳନା କିଣି ଆଣିବ ।'' ତା ପରେ ସ୍ୱାମୀଙ୍କ ବକ୍ଷ'ଉପରେ ହାତ ରଖି କହିଲା, ''ମୁଁ ଯେ ଏ ହୃଦୟରେ ସ୍ଥାନ ପାଇଛି, ଏହା ପ୍ରକାଶ କରିବାର ଆଉ ପ୍ରୟୋଜନ ନାହିଁ । ତୁମର ଏବଂ ମୋର ଜନ୍ମଦିନ—ଝୁନା ପାଇଁ ।''



# କଳାପାଦ୍ରୀ

ଖ୍ରୀଷ୍ଟଧର୍ମ ପ୍ରଚାର ନିମନ୍ତେ ଯେଉଁ ସବୁ ମିଶନ ଅନୁଷ୍ଠାନ ଏ ଦେଶରେ ଅଛି, ସେ ସବୁ ଏ ଦେଶରେ ଅନୁଷ୍ଠିତ ରାଜ୍ୟଶାସନ ନୀତିର ଅନୁରୂପ । ଅବଶ୍ୟ ଇଉରୋପ ଆମେରିକା ପ୍ରଭୃତି ବିଦେଶରୁ ଆମଦାନି ହୋଇଥିବାରୁ, ସମ୍ପ୍ରଦାୟ ବିଶେଷରେ ଏମାନଙ୍କ ମଧ୍ୟରେ ଶାସନଯନ୍ତ୍ରର ଗଠନ ପ୍ରଣାଳୀ ଯେ ବିଭିନ୍ନ ନୁହଁ, ତାହା ନୁହେଁ । କେହି ଅବା ଧର୍ମାଧ୍ୟକ୍ଷ-ଶାସିତ, କେଉଁଠି ଅବା ଲୋକ ଜାଣିବାକୁ ଗଣତନ୍ତ୍ର ପ୍ରତିଷ୍ଠିତ; କିନ୍ତୁ କାର୍ଯ୍ୟତଃ ଏ ସମସ୍ତର ଶାସନପଦ୍ଧତି ହେଉଛି କାର୍ଯ୍ୟକାରୀ ତନ୍ତ୍ର ବା ନୌକରସାହି । କାର୍ଯ୍ୟନୀତିର ହୁକୁମ ସ୍ଥୂଳତଃ ସଦର ମହକୁମା ଅର୍ଥାତ୍ ବିଦେଶରୁ ଆସେ ଏବଂ ତାକୁ ତାମିଲ୍ କରନ୍ତି ସେମାନଙ୍କର ପ୍ରତିନିଧି ବିଦେଶୀୟ ମିଶନାରୀ, ଅଧୀନସ୍ଥ ଦେଶୀୟ କର୍ମଚାରୀମାନଙ୍କ ସାହାଯ୍ୟରେ । ଅତଏବ ନୌକରସାହି ଶାସନତନ୍ତ୍ରର ଅବସ୍ଥା ଯାହା, ମିଶନ ଅନୁଷ୍ଠାନ ସବୁ ମଧ୍ୟ ତାହା, ଯଦିବା ଧର୍ମପ୍ରଚାର ହେଲା ମୁଖ୍ୟ ଉଦ୍ଦେଶ୍ୟ । ମିଶନ ଅଧୀନରେ କାର୍ଯ୍ୟ କରୁଥିବା ସମସ୍ତଙ୍କର ସ୍ଥାନ ଏବଂ ପଦ ସମାନ ନୁହେଁ । କାହାର ଉଚ୍ଚ, କାହାର ଅବା ନୀଚ; କିଏ ବେଶି ଦରମା ପାଏ, କିଏ କମ୍ ଦରମା ପାଏ । କାର୍ଯ୍ୟକାରୀମାନଙ୍କ ମଧ୍ୟରେ ସ୍ଥାନ ଏବଂ ପଦର ତାରତମ୍ୟ ନିର୍ଦ୍ଧାରିତ ହୁଏ, ସେମାନଙ୍କର ଯୋଗ୍ୟତା ଅନୁସାରେ । ଏପରି ଯୋଗ୍ୟତାକୁ କେହି ଯେମନ୍ତ ନ ବୁଝନ୍ତି, କାର୍ଯ୍ୟ ଯେତେବେଳେ ଧର୍ମକାର୍ଯ୍ୟ, ସେହି କାର୍ଯ୍ୟ-

# କଲାପାଦ୍ରୀ

ଯାହା ଯେତେ ଅଧିକ ଯୋଗ୍ୟ,ସେ ସେତେ ଅଧିକ ଧର୍ମପରାୟଣ, ସେତେ ଅଧିକ ହୃଦୟବାନ୍ । ହୃଦୟ ବୋଲି ବସ୍ତୁର ଉତ୍କର୍ଷ ସାଧନ ଯଦିବା ଏ ସମସ୍ତ ଧର୍ମାନୁଷ୍ଠାନରେ ମୁଖ୍ୟ ଉଦ୍ଦେଶ୍ୟ, ତଥାପି ଏ କ୍ଷେତ୍ରରେ କାର୍ଯ୍ୟକାରୀ ନିଯୁକ୍ତ କଲାବେଳେ ଅବା ସେମାନଙ୍କୁ ଶିକ୍ଷାନବିସ୍ ରୂପେ ଗ୍ରହଣ କଲାବେଳେ ସେମାନେ କେତେ ହୃଦୟବତ୍ତାର ପରିଚୟ ଦେଇଛନ୍ତି, ତାହା ବଡ଼ ବେଶି ବିବେଚିତ ହୁଏ ନାହିଁ; ବିଶେଷ କରି ପରୀକ୍ଷା କରାଯାଏ ସେମାନଙ୍କର ପାଠଶାଠ ଏବଂ ଏହି ମସ୍ତିଷ୍କଗତ ବିଦ୍ୟା ଅର୍ଜନ ସେମାନଙ୍କୁ ଉତ୍ତରକାଳରେ ମିଶନ କର୍ମକ୍ଷେତ୍ରରେ ନିଜର ପଦମର୍ଯ୍ୟାଦା ଏବଂ ଆର୍ଥିକ ଉନ୍ନତିରେ ସାହାଯ୍ୟ କରେ ।

ମିଶନ କର୍ମକ୍ଷେତ୍ରରେ 'କଲାପାଦ୍ରୀ'ର କାମ ହେଉଛି ଭାରତୀୟ କର୍ମଚାରୀ ନିମନ୍ତେ ସବୁଠାରୁ ବଡ଼ପାହୁଆ । ଅଧିକାଂଶଙ୍କ ପକ୍ଷରେ ଏଠି ପହୁଞ୍ଚିବା ପୂର୍ବରୁ ଏହାର ତଳେ ଥିବା ଅନେକ ପାହାଚ ଧୈର୍ଯ୍ୟ ଧରି ଅତିକ୍ରମ କରିବାକୁ ହୁଏ । ଶାନ୍ତନିଧିଙ୍କୁ କିନ୍ତୁ କଲାପାଦ୍ରୀ ହେବା ସକାଶେ ଏପରି କୌଣସି ଧୈର୍ଯ୍ୟଧାରଣର ଅସୁବିଧା ଭୋଗ କରିବାକୁ ହୋଇ ନ ଥିଲା ।

ଶାନ୍ତନିଧି ଯେ କଲାପାଦ୍ରୀ ହେଲା, ଅନ୍ତରେ ଉକ୍ତ କାର୍ଯ୍ୟନିମିତ୍ତ ପ୍ରଭୁଙ୍କର ଆହ୍ୱାନ ଅନୁଭବ କରି, ତାହା ନୁହେଁ । ଅନ୍ତରର ଯେଉଁ ପ୍ରେରଣା ଫଳରେ ଲୋକ ଦଶ ରକମ କାମର ଯୋଗାଡ଼ କରୁ କରୁ କୌଣସି ଗୋଟାଏ ଲାଭ କରି ଗ୍ରହଣ କରେ, ତା ତହୁଁ ଅଧିକ କୌଣସି ପ୍ରେରଣା ଶାନ୍ତନିଧି କଲାପାଦ୍ରୀ ବୃତ୍ତି ଗ୍ରହଣ କଲାବେଳେ ଅନ୍ତରେ ଅନୁଭବ କରି ନ ଥିଲା । ଏ କାର୍ଯ୍ୟକୁ ସେ ବୃତ୍ତି ହିସାବରେ ଗ୍ରହଣ କରିଥିଲା ।

ଶାନ୍ତନିଧିର କଲାପାଦ୍ରୀ ବୃତ୍ତି ହେଲା ଏହିପରି । ଯେତେବେଳେ ବି.ଏ. ପାସ୍ କଲା, ସେତେବେଳେ ବାଲେଶ୍ୱର କାହିଁକି ସମଗ୍ର ଓଡ଼ିଶାର ଖ୍ରୀଷ୍ଟିୟାନ ସମାଜରେ ବଡ଼ ବେଶି ଗ୍ରାଜୁଏଟ ନ ଥିଲେ । ଅତଏବ ପାସ୍ କରିବା ପରେ

## ସାମୟିକ

କୌଣସି ବଡ଼ ଚାକିରି ପାଇବା ସକାଶେ ସେ ସେ ଆଶା ପୋଷି ନ ଥିଲା, ଅବା ଚେଷ୍ଟା ଯତ୍ନ କରି ନ ଥିଲା, ଏପରି ନୁହେଁ । ଡେପୋଟି ଚାକିରି ପାଇ ପରୀକ୍ଷା ଦେବାକୁ ହେଉଥିବାରୁ ଦୁଇ ତିନି ଥର ପରୀକ୍ଷା ମଧ୍ୟ ଦେଇଥିଲା; କିନ୍ତୁ କୃତ-କାର୍ଯ୍ୟ ହୋଇପାରିଲା ନାହିଁ । ଏହାପରି ଯେତେବେଳେ ଚାକିରି ଅପେକ୍ଷାରେ ଘରେ ବସି ରହିଥିଲା, ବାଲେଶ୍ୱରର ପାଦ୍ରୀ ସଟନ୍ ସାହେବ ତାକୁ ନିଜ କୋଠିକୁ ଡକାଇ ପଠାଇଲେ । ବାଲେଶ୍ୱର ମିଶନ ବିଦ୍ୟାଳୟରେ ସତୁରିଟଙ୍କା ବେତନରେ ଶିକ୍ଷକତାର କାର୍ଯ୍ୟ କିଛି ସମୟ ନିମନ୍ତେ ଗ୍ରହଣ କରିବାକୁ ଅନୁରୋଧ କଲେ । ସେତେବେଳେ ଶସ୍ତାଗଣ୍ଡାର ସମୟ । ଯଦିବା ଗାନ୍ଧିନିଧିର ଥିଲା ଆଖି ବଡ; ତଥାପି ଘରେ ବସି ରହିବା ଅପେକ୍ଷା ଏକପ୍ରକାର ବସିକରି କିଛିଦିନ ସକାଶେ ସତୁରି ଟଙ୍କା ରୋଜଗାର କରିବାରେ ବିଶେଷ କିଛି କ୍ଷତି ଦେଖିଲା ନାହିଁ । ସରକାର ମହଲରେ ବଡ଼ ବଡ ସାହେବସୁବାଙ୍କ ଭିତରେ ପାଦ୍ରୀମାନଙ୍କର ପ୍ରତିପତ୍ତି ସେ ସମୟରେ ଖୁବ୍ ବେଶୀ । ପାଦ୍ରୀ ସଟନ୍ ସାହେବଙ୍କ ଆନୁଗତ୍ୟ ଭବିଷ୍ୟତରେ ଅନ୍ୟାନ୍ୟ ସରକାରୀ ଚାକିରି ଲାଭରେ ସାହାଯ୍ୟ କରିପାରେ, ଏ କଥା ମଧ୍ୟ ଭାବିଥିଲା । ଏହାପରି ସାତ ପାଞ୍ଚ ଭାବି ଏହି ଅସ୍ଥାୟୀ ମାଷ୍ଟରୀ ଚାକିରି ଗ୍ରହଣ କରିଥିଲା ।

କିନ୍ତୁ ତାର ଏହି ଚାକିରି ବେଶି ଦିନ ଅସ୍ଥାୟୀ ରହିଲା ନାହିଁ । ସ୍କୁଲର ପ୍ରଧାନ ଶିକ୍ଷକର ସ୍ଥାନ ସ୍ଥାୟିଭାବରେ ଖାଲି ହେଲା । ସଟନ ସାହେବ ଜଣେ ଉପଯୁକ୍ତ ଖ୍ରୀଷ୍ଟିୟାନ ଗ୍ରାଜୁଏଟ ପାଇଛନ୍ତି ବୋଲି ବିଲାତର ମିଶନ ସଭାକୁ ଲେଖିଲେ ଏବଂ ଜଣାଇଲେ, ଖ୍ରୀଷ୍ଟିୟାନ ସ୍କୁଲରେ ଅଖ୍ରୀଷ୍ଟିୟାନ ପ୍ରଧାନ ଶିକ୍ଷକ ଅପେକ୍ଷା ଜଣେ ଭାରତୀୟ ଖ୍ରୀଷ୍ଟିୟାନକୁ ରଖିବା ଅଧିକ ବାଞ୍ଛନୀୟ । ତେବେ ପ୍ରଧାନ ଶିକ୍ଷକର ଦରମା ଏକଶ ଟଙ୍କା ଥିବାରୁ ଏ ଯୁବକ ନିମନ୍ତେ ଯଥେଷ୍ଟ ପ୍ରଲୋଭନର ବିଷୟ ନ ହୋଇପାରେ । ସେଥିପାଇଁ ସଟନ ସାହେବ ପ୍ରସ୍ତାବ କଲେ, ଯୁବକର ଲେଖାପଢା ଏବଂ ଉତ୍ତମ ସ୍ୱଭାବ ଚରିତ୍ର ସକାଶୁ ସାଧାରଣ ନିୟମ ବ୍ୟତିକ୍ରମ କରି ତାହାକୁ ଏକାବେଳେ କଳାପାଦ୍ରୀ ସ୍ଥଳରେ

ନିଯୁକ୍ତ କରାଯାଉ । ଅବଶ୍ୟ ସ୍ମିଥ ସାହେବ ଏବଂ ତାଙ୍କର ମେମ୍ ଶାନ୍ତନିଧି ତାଙ୍କ ଅଧୀନରେ କାମ କରିବା ଦିନରୁ ତାକୁ ଯଥେଷ୍ଟ ସ୍ନେହ କରୁଥିଲେ ; ସେଥିପାଇଁ ତାକୁ କିଛି ନ ପଚାରି ଏହି କଳାପାଦ୍ରୀ କାମ ତା ପାଇଁ ଯୋଗାଡ଼ କରିଥିଲେ ।

ଯେଉଁ ଦିନ ଚିଠି ପାଇଲେ କଲିକତାର ମିଶନ ସଭା ତାଙ୍କ ସୁପାରିଶ ଗ୍ରହଣ କରି ଶାନ୍ତନିଧିକୁ କଳାପାଦ୍ରୀ କାମରେ ମୁକରର କରିବାକୁ ରାଜି, ସେହି ଦିନ ଉପରଓଳି ସ୍କୁଲ ଛୁଟି ପରେ ଶାନ୍ତନିଧିକୁ ସାହେବ ମେମ କୋଠିକୁ ଚାହା ଖାଇବାକୁ ଡକାଇ ପଠାଇଲେ । ଖିଆପିଆ ସରିଲାରୁ ସାହେବ କହିଲେ, "ଶାନ୍ତନିଧି, ମୁଁ ତୁମ ପାଇଁ କଲିକତାର ଆମ କମିଟିକୁ ସୁପାରିଶ କରିଥିଲି, ଯେପରି ତୁମେ ମିଶନ ଅଧୀନରେ କଳାପାଦ୍ରୀ କାର୍ଯ୍ୟ କର ।"

ଶାନ୍ତି—ମୁଁ ତ ପରମାର୍ଥ ବିଦ୍ୟାଳୟରେ ପଢି ନାହିଁ ଏବଂ ପୁରୋହିତ ହେବା ଗୁରୁତର କାର୍ଯ୍ୟ, ତାର ଦାୟିତ୍ୱ ବିଷୟରେ ଚିନ୍ତା କରି ନାହିଁ ।

ସାହେବ—ପ୍ରଭୁଙ୍କର ସେବା କରିବା ଯେ ଆମ ସମସ୍ତଙ୍କର କର୍ତ୍ତବ୍ୟ ଏଥିରେ ସନ୍ଦେହ ନାହିଁ । ବିଶେଷ ଉପରେ କେହି ଯେବେ ଗ୍ରାସାଚ୍ଛାଦନର ଚିନ୍ତାରୁ ନିଷ୍କୃତି ପାଏ, ତେବେ ପ୍ରଭୁଙ୍କର ଏହି ଆହ୍ୱାନ, ଅନ୍ତତଃ ମୋ ବିବେଚନାରେ ତା' ନିକଟରେ ଅଲଂଘ୍ୟ ହେବା ଉଚିତ । ମିଶନ ଯେଉଁ କାର୍ଯ୍ୟରେ ତୁମକୁ ନିଯୁକ୍ତ କରିବାକୁ ଇଚ୍ଛା କରୁଛନ୍ତି, ତାହା ଗ୍ରହଣ କଲେ ତୁମେ ଶହେ ପଚିଶ ଟଙ୍କା ପ୍ରଥମରୁ ପାଇବ ଏବଂ ବର୍ଷ କଲେ ଦେଢଶ ପାଇବ । ଅଢେଇଶ ପର୍ଯ୍ୟନ୍ତ ତୁମର ଦରମା ବଢିବ । ତୁମର ପିଲାଝିଲା ହେଲେ ପ୍ରତ୍ୟେକ ପିଲାର ଜନ୍ମଦିନଠାରୁ ତାର ନାବାଳକ କଟିବା ପର୍ଯ୍ୟନ୍ତ ତା ନିମନ୍ତେ ମାସକୁ ଦଶ ଟଙ୍କା ପାଇବ । ଏତଦ୍‌ବ୍ୟତୀତ ମିଶନ ତୁମକୁ ରହିବା ସକାଶେ ଘର ନ ଯୋଗାଇ ପାରିଲେ ତୁମେ ନିଜ ଘର ବନାଇ ତହିଁରେ ରହିଲେ ସୁଦ୍ଧା ତୁମକୁ ଘରଭଡ଼ା ମିଳିବ, ତୁମ ଦରମାର ଦଶଭାଗରୁ

ଲାଗେ । ଏହା ଛଡ଼ା ବେମାର୍ ଆସ୍ତମରେ ତୁମର ପରିବାରର ସମସ୍ତ ଡାକ୍ତର ଖର୍ଚ୍ଚ ଏବଂ ଔଷଧର ବ୍ୟୟଭାର ମିଶନ ବହନ କରିବ । କାର୍ଯ୍ୟରୁ ଅବସର ଗ୍ରହଣ କଲେ ଦରମାର ଅଧେ ପେନ୍‌ସନ ପାଇବ ଏବଂ ଈଶ୍ୱର ନ କରନ୍ତୁ, ଯଦି ତୁମର ସ୍ତ୍ରୀର ମୃତ୍ୟୁ ପୂର୍ବରୁ ତୁମର ମୃତ୍ୟୁ ଘଟେ, ତୁମ ଦରମାର ଏକ ଚତୁର୍ଥାଂଶ ତୁମର ସ୍ତ୍ରୀକୁ ପେନ୍‌ସନ ଦିଆଯିବ । ଅବଶ୍ୟ ମିଶନ ତୁମକୁ ଦରମା ଅଢେଇଶ ଟଙ୍କାରୁ ବେଶି ଦେଇପାରିବ ନାହିଁ; କିନ୍ତୁ ତୁମର ଚାକିରି ସଂକ୍ରାନ୍ତ ସମସ୍ତ ଆନୁଷଙ୍ଗିକ ବିଷୟ ଭାବି ଦେଖିଲେ ବୁଝିପାରିବ, ମିଶନ ତୁମକୁ କେବେ ଅଭାବରେ ପଡିବାକୁ ଦେବ ନାହିଁ । ବର୍ତ୍ତମାନ ତୁମେ କଲାପାଦ୍ରୀ କାର୍ଯ୍ୟ ଗ୍ରହଣ କଲେ, ଏହି ସ୍କୁଲର ପ୍ରଧାନ ଶିକ୍ଷକର କାର୍ଯ୍ୟ କରିବ । ଏହା ଛଡ଼ା ଦେଶର ଏବଂ ସମାଜର ସମସ୍ତ ପ୍ରକାର ମଙ୍ଗଳକର କାର୍ଯ୍ୟରେ ଯୋଗ ଦେବାକୁ ତୁମର ସ୍ୱାଧୀନତା ରହିବ । ମୁଁ ଏବଂ ମୋର ସ୍ତ୍ରୀ ତୁମ ନିମନ୍ତେ ପ୍ରଭୁଙ୍କ ନିକଟରେ ବହୁତ ପ୍ରାର୍ଥନା କରି ଏ କାର୍ଯ୍ୟର ଯୋଗାଡ଼ କରିଛୁ । ମୁଁ ତୁମକୁ ଦୁଇ ଦିନ ସମୟ ଦେଉଛି । ପ୍ରଭୁଙ୍କ ନିକଟରେ ବିଶେଷ ପ୍ରାର୍ଥନା କରି ଦେଖ, ପ୍ରଭୁଙ୍କର ଏହି କାର୍ଯ୍ୟ ନିମନ୍ତେ ତୁମେ ଆପଣାକୁ ଉତ୍ସର୍ଗ କରିପାରିବ କି ନାହିଁ ।''

ସାହେବ ମେମ୍‌ଙ୍କଠାରୁ ବିଦାୟ ନେଇ ଶାନ୍ତନିଧି ମୋହଗଞ୍ଜରେ ନିଜର ଘରକୁ ଫେରି ଆସିଲା । ଘରେ ବାପମାଙ୍କୁ ସାହେବଙ୍କ ପ୍ରସ୍ତାବିତ ବିଷୟ ଜଣାଇଲା । ନିଜେ ମଧ୍ୟ ଭାବି ଚିନ୍ତି ଦେଖିଲା, ଅନ୍ତତଃ ବ୍ୟବସାୟ ହିସାବରେ ମିଶନର ଏ ଚାକିରି ମନ୍ଦ ନୁହେଁ । ଦେଖି ଶୁଣି ଚଳିପାରିଲେ ଏ ଜଗତର ଜୀବନଯାତ୍ରା ସ୍ୱଚ୍ଛନ୍ଦରେ ଏବଂ ସମ୍ମାନ ସହିତ ନିର୍ବାହିତ ହୋଇ-ପାରେ । ସରକାରୀ ଚାକିରିରେ ପ୍ରଭୁ ଅନେକ । ସେ ସମସ୍ତଙ୍କର ମନସ୍ତୁଷ୍ଟି କରି ନ ପାରିଲେ ଚାକିରିରେ ସୁବିଧା ଅପେକ୍ଷା ଅସୁବିଧାହିଁ ବେଶୀ । ସମସ୍ତଙ୍କର ମନ ଯୋଗାଇ ଚଳିବା ଆୟାସସାଧ୍ୟ । କିନ୍ତୁ ମିଶନ ଚାକିରିରେ ସ୍ଥାନୀୟ ଗୋରା ମିଶନେରୀଙ୍କର ପ୍ରିୟପାତ୍ର ହୋଇପାରିଲେ କାମ ସରିଲା । ଜଣେ ଦୁଇଜଣ

ମିଶନେରୀଙ୍କର ମନ ଯୋଗାଇ ଚଳିବା ଅପେକ୍ଷାକୃତ ସହଜସାଧ୍ୟ । କାଗଜ କଲମର ଦାୟିତ୍ୱ ନାହିଁ କହିଲେ ଚଳେ । ଏ ଉପରେ ପୁଣି ନିଜର କର୍ତ୍ତବ୍ୟକୁ ଯତ୍ନର ସହିତ ପାଳିଲେ କେବଳ ଏ ଜଗତ କାହିଁକି, ପରଜଗତର ସୁଖ ସ୍ୱଚ୍ଛନ୍ଦତାର ସୁବିଧା ଯେ କାହିଁକି ନ ହେବ, ତାର ମଧ୍ୟ କାରଣ ନାହିଁ । ପୁରୋହିତର କାର୍ଯ୍ୟ ଯେତେ ହେଲେ ଧର୍ମକାର୍ଯ୍ୟ । ତାର ତ ପୁଣି ପୁରସ୍କାର ଅଛି । ଅବଶ୍ୟ ଶାସ୍ତ୍ର କହୁଛି, ଏ ପୁରସ୍କାର ବେଶି କରି ମିଳିବ ପରଜଗତରେ । ଅତଏବ ଗୋଟାଏ ଢେଲାରେ ଦୁଇଟି ଚଢ଼େଇ ମରିବେ । ଏ ବାଟ ଧରିଲେ ଇହ ପର ଦୁଇ ଲାଭ, ଅର୍ଥାତ୍ ସ୍ୱର୍ଗ ଏବଂ ମର୍ତ୍ତ୍ୟ । ଅତଏବ ନିରୂପିତ ସମୟରେ ଶାନ୍ତନିଧି ସାହେବଙ୍କୁ ଜଣାଇଲା—ସେ କଳାପାଦ୍ରୀ ହେବା ନିମନ୍ତେ ରାଜି । ସାହେବ ଏବଂ ମେମ୍ ବଡ଼ ଖୁସି ହେଲେ । ଶାନ୍ତନିଧିର ଏ ସିଦ୍ଧାନ୍ତ ନିମନ୍ତେ ପ୍ରଭୁଙ୍କୁ ଧନ୍ୟବାଦ ଦେଲେ । ଯଥାସମୟରେ ଶାନ୍ତନିଧି କଳାପାଦ୍ରୀ କାର୍ଯ୍ୟରେ ମୁକରର ହୋଇ ବାଲେଶ୍ୱର ମିଶନ ସ୍କୁଲର ପ୍ରଧାନ ଶିକ୍ଷକର କାର୍ଯ୍ୟ କଲା ।

[ ଦୁଇ ]

ଶାନ୍ତନିଧି କଳାପାଦ୍ରୀ ହେବାର ପଚିଶ ତିରିଶ ବର୍ଷ ପରର କଥା । ଜୀବନ ଗତିଶୀଳ ଏହା ସମାଜ ଏବଂ ବ୍ୟକ୍ତି ଉଭୟଙ୍କ ପକ୍ଷରେ ସତ୍ୟ । ଏହି ଗତି ଯେଉଁ ପରିବର୍ତ୍ତନ ସୂଚନା କରେ ସମୟ ଅନୁକ୍ରମରେ ସମାଜ ଅବା ବ୍ୟକ୍ତିବିଶେଷର ଜୀବନରେ ତାହା ଉନ୍ନତି ହୋଇପାରେ, ଅବନତି ମଧ୍ୟ ହୋଇପାରେ । ପଚିଶ ତିରିଶ ବରଷ କିଛି କମ ସମୟ ନୁହେଁ । ବ୍ୟକ୍ତିଗତ ଜୀବନରେ ତ ନୁହେଁ, ଜାତିର, ସମାଜର, ଦେଶର ଜୀବନରେ ମଧ୍ୟ ନୁହେଁ । ପ୍ରାଚୀନ ଯୁଗରେ କୌଣସି ଏକ ଜାତି ବା ଦେଶ ପାଞ୍ଚଶ ବର୍ଷ ଧରି ଯେ ଉନ୍ନତି ବା ଅବନତି କରିପାରି ନ ଥିଲା, ବର୍ତ୍ତମାନର ପ୍ରତିଯୋଗିତା ମୂଳକ ବିଜ୍ଞାନର ଯୁଗରେ ପାଞ୍ଚବର୍ଷରେ ତତୋଽଧିକ ହେଉଅଛି । ଶାନ୍ତନିଧିର ଜୀବନ ଏବଂ ସେ ସମାଜର ସେ ପଞ୍ଚପୁରୋହିତ, ତାହା ଏହି ଦୀର୍ଘ ସମୟ

# ସାମୟିକ

ଭିତରେ ଉନ୍ନତ ଅବା ଅବନତ କେଉଁ ଆଡ଼କୁ ଗତି କରିଛି, ସେ ବିଷୟରେ ଭାର ଆମ୍ଭେମାନେ ପାଠକପାଠିକାଙ୍କ ଉପରେ ଛାଡ଼ିଦେବା । ଆମ୍ଭେମାନେ କେବଳ ଉକ୍ତ ସମୟ ମଧ୍ୟରେ ଘଟିଥିବା କେତେଗୋଟି ଘଟଣା ଉଲ୍ଲେଖ କରିବା ।

ଏହି ପଚିଶ ତିରିଶବର୍ଷ ଭିତରେ ଶାନ୍ତନଧିର ଯେ ପରିବର୍ତ୍ତନ ଘଟିଛି, ତାହା କହିବା ବାହୁଲ୍ୟ । ତାହାର ବଳିଷ୍ଠ ଋଜୁ ଦେହର ମାଂସପେଶୀସବୁ ଟିକି ଧରିଲାଣି; ପେଟଟି ଓହଳି ପଡ଼ିଛି; ଜଣାଉଛି ଯୌବନର ସୀମା ଟପିବା ପରେ ସ୍ଥୂଳତା ପରିଶ୍ରମ ଅଭାବରେ ବାଧାବନ୍ଧନବିହୀନ ହୋଇଛି । ମୁହଁ ଗୋଲଗାଲ ହୋଇ ଦିଶୁଛି ପାଚିଲା ଫଳଟି ପରି, ତନ୍ମଧ୍ୟରେ ଆମ୍ବୁଡ଼ା ଦାଗ ସୁଦ୍ଧା ପଡ଼ି ନାହିଁ ତା ଉପରେ । ମୁହଁ ଦେଖିଲେ ମନେ ହୁଏ, ଯେପରି ମିଶନର ଅନ୍ତୁ-ଆଳରେ ରହି ଏହି ଉଦ୍‌ବେଗବିହୀନ ଜୀବନ ମହା ଆରାମରେ ପୂରି ରହିଛି । ମୁଣ୍ଡର ଦରପଚା ବାଳ ପରିପକ୍ୱ ମସ୍ତିଷ୍କର ପରିଚୟ ନ ହେଲେ ସୁଦ୍ଧା ବୟସ୍କ ପୁରୋହିତର ଉପଯୁକ୍ତ ଭୂଷଣ ହୋଇଛି । ଲୋକ ଗହଳି, ସଭାସମିତି, ହାଟବଜାର, ଏମନ୍ତ କି ସରକାରୀ ବଡ଼ ବଡ଼ ହାକମହକୁମାଙ୍କ ଗହଣରେ ମଧ୍ୟ ବସିବା ଉଠିବାବେଳେ ଏହି ମୌନ ମସ୍ତକ ନିଜର ରଜତ ଗୌରବ ଅକ୍ଷୁଣ୍ଣ ରଖିଅଛି । ଲୋକଙ୍କ ଆଖିରେ ନିଜର ବ୍ୟକ୍ତିତ୍ୱର ମର୍ଯ୍ୟାଦା ବଢାଇ-ବାକୁ ହେଲେ ଯେ ଅନେକ ସମୟରେ ପରିପାଟୀ ପରିଚ୍ଛଦର ସାହାଯ୍ୟ ନେବାକୁ ହୁଏ, ଏ ଜ୍ଞାନ ଯେଉଁଦିନ ପୁରୋହିତଙ୍କର ଉଦୟ ହେଲା, ସେହି ଦିନୁ ଖୋଲା ଛାତିକୋଟ ଭିତରେ ଟାଇକଲର ଦେଖାଦେଲା; ନହୁବା ପହିଲି ପହିଲି ଗଲାବନ୍ଧ କୋଟ ଆଉ ପ୍ୟାଣ୍ଟ ଜଳାପାଦ୍ରୀର ମର୍ଯ୍ୟାଦା ଆଉ ବଶିଷ୍ଟତା ରକ୍ଷା କରିବା ପକ୍ଷରେ ଯଥେଷ୍ଟ ବିବେଚିତ ହୋଇଥିଲା ।

ଶାନ୍ତନଧିର ପାରିବାରିକ ଜୀବନରେ ପରିବର୍ତ୍ତନ ଘଟିଥିଲା । ପ୍ରଥମେ ଯେତେବେଳେ ଅବସ୍ଥା ଅବିବାହିତ, ସେତେବେଳେ ବାପ ମା ପାଖରେ ଥିଲା । ପାଦ୍ରୀ ହେବା ପରେ ପାଦ୍ରୀ ସାହେବମାନେ ଶାନ୍ତନଧିକୁ ବୁଝିବାକୁ ଦେଲେ ଯେ

ପୁରୋହିତ ପକ୍ଷରେ ଅନେକ ଦିନ ଅବିବାହିତ ରହିବା ଶୋଭନୀୟ ନୁହେଁ କି ନିରାପଦ ନୁହେଁ । ବିବାହ ଈଶ୍ୱରଦତ୍ତ ବିଧି, ଶରୀର ପକ୍ଷରେ ଅତ୍ୟାବଶ୍ୟକୀୟ ନ ହେଲେ ସୁଦ୍ଧା ତାର ଆତ୍ମାର ସ୍ୱାସ୍ଥ୍ୟୋନ୍ନତି ନିମନ୍ତେ ନିତାନ୍ତ ଦରକାର ; କାରଣ ପୌରୋହିତ୍ୟ ବଡ଼ ଦାୟିତ୍ୱପୂର୍ଣ୍ଣ । ଅନେକ ସମୟରେ ତାକୁ ଖ୍ରୀଷ୍ଟ-ସମାଜର ବିବାହିତ, ଅବିବାହିତ, ସଚ୍ଚରିତ୍ର, ଅସଚ୍ଚରିତ୍ର, ଅନେକ ରକମର ସ୍ତ୍ରୀ ପୁରୁଷଙ୍କ ସଂସ୍ପର୍ଶରେ ଆସିବାକୁ ହେବ, ସେମାନଙ୍କର ଅଭାବ ଅଭିଯୋଗ ଶୁଣି-ବାକୁ ହେବ । ଅତଏବ ପାଦ୍ରୀ ନାମରେ ଯେପରି କଳଙ୍କ ନ ଲାଗେ, ସେଥିପାଇଁ ତାକୁ ଆତଙ୍କନିଗ୍ରହ ଗୋଟିଏ ରକ୍ଷାକବଚ ପାଖରେ ରଖିବାକୁ ହେବ, ଅର୍ଥାତ୍ କୌଣସି ଗୋଟିଏ ସ୍ତ୍ରୀଲୋକକୁ ପତ୍ନୀରୂପେ ଗ୍ରହଣ କରିବାକୁ ହେବ । ଆଉ ମିଶନ ତ ସେଥିପାଇଁ କମ ସୁବିଧା ଦେଇ ନାହିଁ । ପ୍ରଜନନ କ୍ରିୟା ଯେପରି ଅବାଧରେ ଚାଲିବ, ସେଥିପାଇଁ ଭତ୍ତା ପିଲାଝିଲା ମାଏ ସମସ୍ତଙ୍କ ସକାଶେ ଭତ୍ତା ଖଞ୍ଜି ଦେଇଛି । ଏହି ସବୁ ନାନା ପ୍ରକାର ପ୍ରତ୍ୟକ୍ଷ ଏବଂ ପରୋକ୍ଷ ପ୍ରରୋ-ଚନାରେ ପଡ଼ି ଶାନ୍ତିନିଧି ବିଭା କଲା । ବିଭା କରିବାର ଅଳ୍ପ ଦିନ ମଧ୍ୟରେ ତାକୁ ବାପ ମା ଘରୁ ଭିନ୍ନ ହେବାକୁ ପଡ଼ିଲା । ଭାର୍ଯ୍ୟା ସହିତ ମା ଏବଂ ଅନ୍ୟାନ୍ୟ ଭାଇ ଭଉଣୀଙ୍କର ବନିଲା ନାହିଁ । ରୋଜ ରୋଜ କଳିକଜିଆ ହେଲା—ଘରେ ଅଶାନ୍ତି ବଢ଼ିଲା । ଏହି ଅଶାନ୍ତିର କଥା ତାର ଶୁଭାକାଂକ୍ଷୀ ମିଶେନେରୀମାନଙ୍କର କାନକୁ ଗଲା । ତାଙ୍କ ଦେଶରେ ପୁଅ ବାହାହେଲେ ବାପ ମା ପାଖରୁ ଭିନ୍ନ ହୋଇ ନିଜର ଅଲଗା ସଂସାର ପାତେ । ଅତଏବ କର୍ତ୍ତୃତ୍ୱ ନିମନ୍ତେ ତାର ସ୍ତ୍ରୀର ଦାବୀ ଯେ ନ୍ୟାଯ୍ୟ,ଏ କଥା ସେମାନେ ତା ପାଖରେ ସ୍ୱୀକାର କଲେ । ତାକୁ ଜଣାଇଦେଲେ ଯେ, ସେ ଯଦି ବାପ ମା ଘରୁ ଭିନ୍ନ ହେବାକୁ ଇଚ୍ଛା କରେ, ତାର ରହିବା ସକାଶେ କୌଣସି ମିଶନବଙ୍ଗଳା ସେତେବେଳେ ଖାଲି ନ ଥିଲେ ସୁଦ୍ଧା ସେମାନେ ତା ପାଇଁ ନେଳିଆବାଗରେ ଅକ୍ଳେଶରେ ଗୋଟିଏ ଘର ଭଡ଼ା ନେଇପାରିବେ । ଏହାପରେ ଶାନ୍ତିନିଧି ବିଭା ହେବାର ଅଳ୍ପଦିନ ଭିତରେ ଘରୁ ଅଲଗା ହୋଇ ନେଳିଆବାଗର ଭଡ଼ାଘରେ ରହିଲା । ଅବଶ୍ୟ ଘରୁ ଅଲଗା ହେବାବେଳେ ଯଥେଷ୍ଟ ବଦାନ୍ୟତା ଦେଖାଇଥିଲା, ଅର୍ଥାତ୍

ପୈତୃକ ଇଜମାଲ ସମ୍ପତ୍ତି ଘରବାଡ଼ି ପ୍ରଭୃତିରେ ଅନ୍ୟାନ୍ୟ ଭାଇମାନଙ୍କଠାରୁ ନିଜର ଅଂଶ ଦାବୀ କରିବ ନାହିଁ, ଏ କଥା ସ୍ୱତଃପ୍ରବୃତ୍ତ ହୋଇ ଜଣାଇଁ ଦେଇ-ଥିଲା । ପ୍ରଥମ କେତେକ ବର୍ଷ ଯଦିବା ମିଶନର ଭଡ଼ାଘରେ ରହୁଥିଲା, ନିଜର ଘରଦ୍ୱାର କରିବାକୁ ତାକୁ ବେଶି ଦିନ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ନିଜର ଯାହା ଘରଦ୍ୱାର ହେଲା, ତାହା ବେଶ ଭଲରକମର ହେଲା, ଅର୍ଥାତ୍ ପାଞ୍ଚ ଛଅ ଏକର ଜମି ଉପରେ ବାଡ଼ବଗିଚ୍ଚ କୂଅପୋଖରୀ ଏବଂ ଦୋ-ମହଲା ପକ୍କା ଘର ଏବଂ ଖଣ୍ଡେ ବେବିଅଷ୍ଟିନ୍ କାର ମଧ୍ୟ । ଏଥିରୁ କୌଣସି ନିର୍ବୁଦ୍ଧି ଯେପରି ମନେ ନ କରେ, ଏ ମଟର ଗାଡ଼ି ହେଲା ପଇସା ଆମଦାନିର ମାନ ବଢ଼ିବା ଅବା ଏ ଜଗତରେ ଐୟାସ ମଜଲିସରେ ରହିବାର ବାସନା ପ୍ରଭୃତି କୌଣସି ସାଧାରଣ କାରଣରୁ । ଖ୍ରୀଷ୍ଟିୟାନ କୁଆଡେ ଆପଣାକୁ ଏ ଜଗତରେ ବିଦେଶୀ ପ୍ରବାସୀ ବୋଲି ମନେ କରେ । ସେ ସ୍ୱର୍ଗପୁରର ଯାତ୍ରୀ । ପୁରୋହିତ ତତୋଽଧିକ । ଅତଏବ ପୁରୋହିତ ପକ୍ଷରେ ଏପରି ବିଳା-ସିତାର କୌଣସି ପ୍ରତ୍ୟକ୍ଷ କୈଫିୟତ୍ କାହାରିକୁ ଦେବାକୁ ନ ହେଲେ ସୁଦ୍ଧା, ପରୋକ୍ଷ ପ୍ରତିକୂଳ ସମାଲୋଚନା କାଳେ ପୁରୋହିତଙ୍କର ଧାର୍ମିକତା ବିସ୍ତାର କାର୍ଯ୍ୟରେ ବାଧାସ୍ୱରୂପ ହେବ, ଏଥିପାଇଁ ସମୟ ଅସମୟରେ ଇସାରା ଇଙ୍ଗିତରେ ଜଣାଇ ଦିଆଯାଉଥିଲା, କଳାପାଦ୍ରୀଙ୍କର ଧର୍ମକର୍ମର ପରିଧି ବଡ଼ ବିସ୍ତୃତ ହୋଇପଡ଼ିଛି; ସ୍ୱଲ କର ଅବା ଭଡ଼ାଗାଡ଼ିର ସାମୟିକ ସାହାଯ୍ୟରେ ଉକ୍ତ କକ୍ଷକୁ ଯଥାମତ ପ୍ରଦକ୍ଷିଣ କରିବା ସମ୍ଭବ ନୁହେଁ, ତେଣୁକରି ପୁରୋହିତ ନିଜର ଗୋଟିଏ ଗାଡ଼ି ରଖିବାର କଷ୍ଟ ସ୍ୱୀକାର କରିଛନ୍ତି ।

ଧର୍ମ ଅନ୍ତରର ବସ୍ତୁ । ଭିତରର କଥା, ପୁରୋହିତଙ୍କର ଧର୍ମ ବଢ଼ୁଥିଲା କି ଛିଡ଼ୁଥିଲା ସେ କଥା କହିବା ଦୁଷ୍କର । କିନ୍ତୁ କର୍ମର ପରିଧି ସମଗ୍ର ବାଲେଶ୍ୱର ସହର କାହିଁକି, ଓଡ଼ିଶା ପ୍ରଦେଶକୁ କେବଳ ବେଷ୍ଟନ କରିଥିଲା, ତାହା ନୁହେଁ, ଓଡ଼ିଶାର ବାହାରକୁ ବୋଲି ମେଲିଥିଲା । ବାଲେଶ୍ୱର ମିଶନ ବିଦ୍ୟାଳୟ ପରି ଅଳ୍ପପରିସରର କର୍ମକ୍ଷେତ୍ରରେ ଶାନ୍ତନିଧି ପରି କର୍ମୀ ଯେ ଅନନ୍ୟମନସ୍କ ହୋଇ ଆବଦ୍ଧ ହୋଇ ରହିଲା ନାହିଁ, ସମାଜର ଅବା ଦେଶର

## ଜଳାପାତ୍ରୀ

ବିଦ୍ୟାଶିକ୍ଷାର ଉନ୍ନତି କାର୍ଯ୍ୟରେ ଯେ ଆପଣାକୁ କର୍ତ୍ତବ୍ୟ ଜ୍ଞାନରେ ନିଯୁକ୍ତ ରଖିଲା ନାହିଁ ବୋଲି ସମାଜ ଆକ୍ଷେପ କରେ, ଏଇଟା ତାର ଆକ୍ଷେପ ନୁହେଁ, ଅସୂର୍ଯ୍ୟା। ଇସ୍କୁଲର ପିଲାଗୁଡ଼ାଙ୍କ ସ୍ୱଭାବ ହେଉଛି ମାଷ୍ଟରମାନଙ୍କର ନିନ୍ଦା କରିବା, କାରଣ ଥାଉ ଅବା ନ ଥାଉ। ପ୍ରଧାନ ଶିକ୍ଷକରୂପେ ଶାନ୍ତିନିଧିର ମୁଖ୍ୟ କାର୍ଯ୍ୟ ଥିଲା, ବିଦ୍ୟାଳୟର ପରିଚାଳନା କରିବା, ଯଦିବା ତାର ହାତ୍ରା ଭିତରେ ଷୋଳ ସତର ଘଣ୍ଟା ଶିକ୍ଷକତାର କାର୍ଯ୍ୟ କରିବା ପାଇଁ ରୁଟିନ୍‌ରେ ବ୍ୟବସ୍ଥା ଥିଲା। ପ୍ରଧାନ ଶିକ୍ଷକର ଅନୁପସ୍ଥିତିରେ ସ୍କୁଲ ଯେ ବନ୍ଦ ରହୁ ନ ଥିଲା, ଏଥିରୁ ବୁଦ୍ଧିମାନ ବ୍ୟକ୍ତି ମାତ୍ରକେ ପ୍ରଧାନ ଶିକ୍ଷକର ପରିଚାଳନାର ବାହାଦୁରି ଦେଖନ୍ତେ। କିନ୍ତୁ ସ୍କୁଲ ପିଲା ତ ଆଉ ତେଡ଼େ ବୁଦ୍ଧିମାନ ନୁହନ୍ତି। ସେମାନେ ଘରକୁ ଅସି ଖାଲି ନିନ୍ଦା କରନ୍ତି। କହନ୍ତି—ପ୍ରଧାନ ଶିକ୍ଷକ ଠିକ ସମୟରେ ସ୍କୁଲକୁ ଆସୁ ନାହାନ୍ତି, ତାଙ୍କର କ୍ଲାସ ନଉ ନାହାନ୍ତି, ଅନେକ ସମୟରେ ନିଜର ଖାସ କାମଡ଼ାରେ ଆରାମ ଚଉକି ଉପରେ ଶୋଇ ରହୁଛନ୍ତି, ଅଥଚ କ୍ଲାସକୁ ଆସୁ ନାହାନ୍ତି। ପିଲାଙ୍କଠାରୁ ଦୂରଦର୍ଶିତା ଅପେକ୍ଷା କରିବା ବିଡମ୍ବନା। ସେମାନେ ବୁଝିପାରନ୍ତି ନାହିଁ, ପ୍ରଧାନ ଶିକ୍ଷକଙ୍କର ଏଇ ଶୋଇ ରହିବାଟା ଦରକାର। ମନୁଷ୍ୟ ଶରୀର ଯେତେ ହେଲେ ଗୋଟାଏ କଳ। କଳ ଯଦି ଚବିଶ ଘଣ୍ଟା ଚାଲିବ, ବିଗିଡ଼ିଯିବ; ମଝିରେ ମଝିରେ ଦମ୍ ନେଉଥିଲେ କର୍ମକ୍ଷମ ହେବ। ଶାନ୍ତିନିଧିର କାମର ସୀମା ନ ଥିଲା ଏବଂ ଅନେକ ରକମର। ତା ଶିକ୍ଷକତା ହେଉ ଅବା ଅନ୍ୟ ଯାହା କିଛି ହେଉ, କୌଣସି ଗୋଟାଏ କାର୍ଯ୍ୟରେ ପାରଦର୍ଶିତା ଲାଭ କରିବାର ହୀନତା ସ୍ୱୀକାର କରିବାକୁ ତାକୁ ବେଳ ନ ଥିଲା। ଅବଶ୍ୟ ଜଳାପାତ୍ରୀ ହିସାବରେ ସେ ପ୍ରଧାନ ଶିକ୍ଷକର କାର୍ଯ୍ୟ କରି ତାହାର ଜୀବିକା ନିର୍ବାହ କରୁଥିଲା। କିନ୍ତୁ ଏତଦ୍‌ବ୍ୟତୀତ ଆହୁରି ଅନେକ ଅନାହାରୀ ମାନବସେବା, ସମାଜସେବା କାର୍ଯ୍ୟରେ ମଧ୍ୟ ସେ ଆପଣାକୁ ନିଯୁକ୍ତ କରିଥିଲା। ଲୋକେ କହନ୍ତି, ସର୍କଲ ସାହେବ ଉପରେ ତାର ଏତେ ବେଶି ପ୍ରଭାବ ଯେ, ସାହେବ ଯଦି ଧଳା ଦେଖୁଥିବେ; କିନ୍ତୁ ଶାନ୍ତିନିଧି ତାକୁ କହିବ କଳା, ସାହେବ ନିର୍ବିବାଦରେ ତାକୁ କଳା ବୋଲି ମାନିନେବେ। ଅତଏବ

## ସାମୟିକ

ମିଶନେରି ମହଲର ପରୋକ୍ଷ ପ୍ରଭାବର ଫଳରେ ହିତକର ଏପରି କୌଣସି ଅନୁଷ୍ଠାନ ନ ଥିଲା, ଯେଉଁଠି ତାର ଆସନ ପ୍ରତିଷ୍ଠିତ ନ ଥିଲା । ସେ ବାଲେଶ୍ବର ଜେଲଖାନାର ପରିଦର୍ଶକଙ୍କ ମଧ୍ୟରୁ ଜଣେ, ହସପାତାଲ କମିଟିର ମେମ୍ବର, ମ୍ୟୁନିସିପାଲିଟିରେ ନିର୍ବାଚିତ ନ ହେଲେ ସୁଦ୍ଧା ଗଭର୍ଣ୍ଣମେଣ୍ଟଙ୍କ ତରଫରୁ ମନୋନୀତ କମିଶନର ଜିଲା ବୋର୍ଡର ଚେୟାରମାନ, ଅସ୍ପୃଶ୍ୟଜାତିର ପ୍ରତିନିଧିରୂପେ ପ୍ରାଦେଶିକ ବ୍ୟବସ୍ଥାପକ ସଭାର ମନୋନୀତ ସଦସ୍ୟ । ଅବଶ୍ୟ ଅସ୍ପୃଶ୍ୟଙ୍କ ସକାଶେ କୌଣସି ହିତକର କାର୍ଯ୍ୟ କରିଥିଲା ବୋଲି ଯେ ଏ ପଦ ପାଇଥିଲା, ତାହା ନୁହେଁ, ବୋଧହୁଏ ଅସ୍ପୃଶ୍ୟଙ୍କୁ ନିଜ ସମାଜଭୁକ୍ତ କରିବା ସକାଶେ ଖ୍ରୀଷ୍ଟୀୟ ସମାଜର ଉଦାରତାର ଏ ହେଉଛି ପୁରସ୍କାର । ତାର ଏ ସମସ୍ତ କର୍ମକୁଶଳତାରେ ସନ୍ତୁଷ୍ଟ ହୋଇ ସରକାର ତାକୁ ରାୟବାହାଦୁର ଉପାଧିରେ ଭୂଷିତ କରିଥିଲେ । ଏଥି ସକାଶୁ ସେ ହେଲା ଜଣେ ଖାସ ଦରବାରୀ । ଲୋକସେବା ବା ସରକାର ସେବାର ପୁରସ୍କାରରେ ଯେ କେବଳ ଗୋଟାଏ ଫମ୍ପା ଉପାଧି, ତାହା ନୁହେଁ; ଏଥିରେ ପରୋକ୍ଷ ଲାଭ ମଧ୍ୟ ଥିଲା ଯଥେଷ୍ଟ ।

ଖ୍ରୀଷ୍ଟିୟାନ ସମାଜ ହେଉ ଅବା ଅନ୍ୟ ଯେ କୌଣସି ସମାଜ ହେଉ, ସମାଜ ହେଉଛି ଗୋଟିଏ ଚିଡ଼ିଆଖାନା । ଅନେକ ପ୍ରକାର ଜନ୍ତୁ ସେଥିରେ ଥାନ୍ତି । ଶାନ୍ତିନିଧିର ଆୟର ଅନନୁପାତିକ ଆଡ଼ମ୍ବର ଦେଖି ବାଲେଶ୍ବର ଖ୍ରୀଷ୍ଟିୟାନ ସମାଜର କେତେକ ଈର୍ଷାପରାୟଣ ଲୋକ ଶାନ୍ତିନିଧି ଯେ ଏହି ଦୃଶ୍ୟତଃ ଅନାହାରୀ ଲୋକସେବା କାର୍ଯ୍ୟରୁ ବୈଜ୍ଞାନିକ ପରି ନିଜ ନିମନ୍ତେ ନାନାପ୍ରକାର ଆହାର ଯୋଗାଡ଼ କରି ନେଉଥିଲା, ଏ କୁତ୍ସା ରଟନା କରିବାକୁ ପଶ୍ଚାତ୍ପଦ ହେଉ ନ ଥିଲେ । କିନ୍ତୁ ପାଦ୍ରୀମହଲରେ ଏ କୁତ୍ସା କାଟି କଲା ନାହିଁ ।

ଏହି ପଚିଶ ତିରିଶ ବର୍ଷ ଭିତରେ ଖ୍ରୀଷ୍ଟିୟାନ ସମାଜର ଅବସ୍ଥାରେ ଅନେକ ପରିବର୍ତ୍ତନ ମଧ୍ୟ ଘଟିଥିଲା । ଗୋଟିଏ ବିଷୟରେ ଅନ୍ତତଃ ଏ ପରିବର୍ତ୍ତନ ବେଶି

ଟିକେ ଲକ୍ଷିତ ହେଉଥିଲା । ତାହା ହେଉଛି ବିଦ୍ୟାଶିକ୍ଷାର ପ୍ରସାର । ବାଲେଶ୍ବର ଖ୍ରୀଷ୍ଟିୟାନ ସମାଜ ପରି ନିରସ୍ତ ପାଦପ ଦେଶରେ ଗୋଟିଏ ଦୁଇଟି ଏରଣ୍ଡ ଯାଏ ଯାବତ୍ ଦ୍ରୁମ ହେବାର ଗୌରବ ଏକଚାଟିଆ ଅଧିକାର କରିଥିଲେ; ସେ ଜାଗାରେ ଅକସ୍ମାତ୍ କେତେ ଗୁଡ଼ିଏ ଛୋଟ ବଡ଼ ଦ୍ରୁମ ଦେଖା ଦେଇଥିଲେ, ଅର୍ଥାତ୍ କେତେଗୁଡ଼ିଏ ଯୁବକ ଏବଂ ଯୁବତୀ ଉଚ୍ଚଶିକ୍ଷା ଲାଭକରି ବି.ଏ. ଏମ୍.ଏ. ଉପାଧିରେ ଭୂଷିତ ହୋଇଥିଲେ । ଏହି ସ୍ବପ୍ରୋତ୍‌ଥିତ ଯୁବଶକ୍ତି ସବୁ ବିଷୟରେ ପ୍ରଶ୍ନ ପଚାରିବାର ଅଧିକାର ଦାବୀ କରିବାରୁ ଖ୍ରୀଷ୍ଟମଣ୍ଡଳୀରେ ମହା ଚଞ୍ଚଳତା ଉପସ୍ଥିତ ହେଲା । ମିଶେନେରୀ ବୁଢ଼ା ଅବା ତାଙ୍କର ମୁଖପାତ୍ର ଶାନ୍ତନିଧି ବୁଢ଼ା, ଏଣିକି ଦେଖିଲେ, ମଣ୍ଡଳୀ ପରିଚାଳନା ପ୍ରଭୃତି ସମସ୍ତ କାର୍ଯ୍ୟରେ ନିଜର 'ମେଭରିଚ୍' ନୀତି ତୀବ୍ର ସମାଲୋଚନାର ସମ୍ମୁଖୀନ ହେଉଛି । ରଫା ନ କଲେ ଚଳୁ ନାହିଁ; ଅଥଚ ଏତେ ଦିନର ଗାଦ୍ଦିନସୀନ ସମ୍ମାନ ରହୁ ନାହିଁ ।

[ ତିନି ]

ସମାଜରେ ଯେତେ ଗୁଡ଼ିଏ ଯୁବକ ଏବଂ ଯୁବତୀ ଗ୍ରାଜୁଏଟ ହୋଇଥିଲେ, ତାଙ୍କ ଭିତରେ ଧୀରେନ୍ଦ୍ର ଥିଲା ଆଗଚଲା । ତାର ବିଶେଷ ପାରଦର୍ଶିତା ଥିଲା ଇଂରାଜୀରେ ବକ୍ତୃତା ଦେବାରେ । ସେଥିପାଇଁ ତାର ବାପର ଇଚ୍ଛା ଅନୁସାରେ ସେ କଲିକତାରେ ଓକାଲତି ପଢୁଥିଲା । ସେ ଥିଲା ତେଜୀ, ସ୍ବାଧୀନଚେତା ଏବଂ ଉତ୍ସାହୀ—ବିଶେଷତଃ ସମାଜ ସମ୍ପର୍କୀୟ କାର୍ଯ୍ୟରେ । ସେ ଯେତେବେଳେ ଖରା ଛୁଟିରେ ବାଲେଶ୍ବର ଆସିଲା, ଶୁଣିଲା, ପାଦ୍ରୀମାନେ ସ୍ଥିର କରିଛନ୍ତି, ଉଚ୍ଚ ବିଦ୍ୟାଳୟକୁ ଉଠାଇଦେବେ ଏବଂ ବଢେଇ, କମାର କାମ ଶିଖାଇବା ପାଇଁ ଯେଉଁ ଛୋଟ କାରଖାନାଟି ରଖିଛନ୍ତି, ଚେଷ୍ଟା କରିବେ ତାହାର ଉନ୍ନତି ସାଧନ କରିବାକୁ ।

ସ୍କୁଲ ସମ୍ବନ୍ଧରେ ପାଦ୍ରୀଙ୍କର ଏହି ନୀତିର ବିରୁଦ୍ଧରେ ଧୀରେନ୍ଦ୍ର ଆନ୍ଦୋଳନ ଆରମ୍ଭ କଲା । ଏହି ଆନ୍ଦୋଳନ ଫଳରେ ବାଲେଶ୍ବର ଖ୍ରୀଷ୍ଟିୟାନ ସମାଜରେ

ଥର ଦୁଇ ଜନ ସାଧାରଣ ସଭା ବସିଲା । ସେଥିରେ ପାଦ୍ରୀ ଏବଂ ମଣ୍ଡଳୀ ଉଭୟ ପକ୍ଷ ଉପସ୍ଥିତ ହୋଇଥିଲେ । ଏହିପରି ସଭାରେ କଳାପାଦ୍ରୀ ଶାନ୍ତନିଧି ପାଦ୍ରୀ-ମାନଙ୍କର ମୁଖପାତ୍ର ସ୍ୱରୂପେ ଖ୍ରୀଷ୍ଟିୟାନ ମଣ୍ଡଳୀକୁ ବୁଝାଇବାକୁ ଲାଗିଲା ବିଦ୍ୟାଳୟ ବନ୍ଦ କରିବାର କାରଣ । ସେ କହିଲା—

"ଭାଇମାନେ, ପାଦ୍ରୀମାନେ ଖ୍ରୀଷ୍ଟିୟାନ ସମାଜର ଦୂର ଭବିଷ୍ୟତ୍ ଉପରେ ଦୃଷ୍ଟି ରଖି ସମାଜର ମଙ୍ଗଳ ସକାଶେ ସ୍କୁଲ୍ ବନ୍ଦ କରୁଛନ୍ତି, ଯଦିବା ଆପାତତଃ ଦେଖାଯାଉଛି, ଯେପରି ସମାଜ ପକ୍ଷରେ ଏ କାର୍ଯ୍ୟ ଅନିଷ୍ଟଜନକ । ବି.ଏ.,ଏମ୍-ଏ. ପାସ କରିଥିବା ପାଠୁଆମାନଙ୍କର ଅବସ୍ଥା ବର୍ତ୍ତମାନ ଯାହା ହେଲାଣି, ସେଥିରୁ ଭବିଷ୍ୟତରେ ଯେ କଣ ହେବ, ଏ କଥା ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତି ବୁଝିପାରୁଥିବେ । ଏପରି ପୋଥି ବାଇଗଣ ବୃକ୍ଷରେ ଯେ ପେଟ ପୂରିବ ନାହିଁ, ଏ କଥା ଏବକୁ ଜଣାପଡିଲାଣି । ପେଟରେ ଭୋକ ଅବା ଓଦାକନା ପକାଇ କଥଞ୍ଚିତ୍ ଥଣ୍ଡା କରାଯାଇପାରେ;କିନ୍ତୁ ମନର କ୍ଷୋଭ କେଉଁଥିରେ ଶାନ୍ତ ହେବ ? ଅତଏବ କେବଳ ସାହିତ୍ୟିକ ଶିକ୍ଷା ଲାଭ ନ କରି ଯେଉଁଥିରେ ଅନ୍ତତଃ ମୋଟାଝୁଟା ରକମର ଖାଇବା ପିନ୍ଧିବାକୁ ମିଳିବ, ଏପରି କୌଣସି ହାତକାମ ଶିଖିବା ଭଳି ବିଦ୍ୟା ଆଡ଼କୁ ନଜର ଦେବା ସମାଜର ଏବଂ ସମାଜର କର୍ତ୍ତୃପକ୍ଷଙ୍କର ଉଚିତ । ପାଦ୍ରୀମାନେ ଯେ ଏ ବିଷୟରେ ସମାଜ ଆଗରେ ସେମାନଙ୍କର ଦୂରଦର୍ଶିତା ଦେଖାଇଛନ୍ତି, ସେଥି ନିମନ୍ତେ ପ୍ରତିକୂଳ ଆନ୍ଦୋଳନ କରିବା ଅପେକ୍ଷା ସେମାନଙ୍କ ନିକଟରେ ନିଜର କୃତଜ୍ଞତା ପ୍ରକାଶ କରିବା ବରଂ ସମାଜର ଉଚିତ । ସ୍କୁଲ ବନ୍ଦ କରିବାର ଅନ୍ୟତମ କାରଣ ହେଉଛି ମିଶନର ଅର୍ଥାଭାବ । ସ୍କୁଲ ସକାଶେ ଶହ ଶହ ଟଙ୍କା ଖର୍ଚ୍ଚ କରିବା-ଭଳି ଅର୍ଥ ବର୍ତ୍ତମାନ ମିଶନର ନାହିଁ । ବଢେଇ ଏବଂ କମାର କାମର ଶିକ୍ଷା ବତାଇବା ଭଳି ଖର୍ଚ୍ଚ ମଧ୍ୟ ତୁଲେଇବା ମିଶନ ପକ୍ଷରେ କଷ୍ଟକର । ତଥାପି ମିଶନ ସମାଜର ଉନ୍ନତିକଳ୍ପେ ଏ ବ୍ୟୟଭାର ବହନ କରିବାକୁ ଦୟାକରି ସ୍ୱୀକୃତ ହୋଇଅଛନ୍ତି । ଅତଏବ ମିଶନର ବିରୁଦ୍ଧତା ନ କରି ଆସ ଆମ୍ଭେ-ମାନେ ଏ ବିଷୟରେ ମିଶନର ସହଯୋଗୀ ହେଉଁ ।"

ଉତ୍ତରରେ ଧୀରେନ୍ଦ୍ର କହିଲା, "ସାହିତ୍ୟିକ ବିଦ୍ୟାଶିକ୍ଷା ସମ୍ବନ୍ଧରେ ଶାନ୍ତିନିଧି ବାବୁ ଯାହା କହିଲେ,ସେଥିରେ ଯେ କିଛି ସତ୍ୟ ନାହିଁ, ତାହା ନୁହେଁ ତେବେ ମିଶନ ସ୍କୁଲରେ ମାଟ୍ରିକ କ୍ଲାସ ପର୍ଯ୍ୟନ୍ତ ପଢି ଅବା ମାଟ୍ରିକ ପାସ୍ କରି ସମସ୍ତେ ଯେ ବି. ଏ., ଏମ୍. ଏ. ହେବାକୁ ଦଉଡିବେ, ଅନ୍ତତଃ ଖ୍ରୀଷ୍ଟିୟାନ ସମାଜର ସେ ସୌଭାଗ୍ୟ ସ୍ୱପ୍ନର ବିଷୟ । ଟଙ୍କା କଉଡି ରୋଜଗାର କରିବାର ସୁବିଧା ଛଡ଼ା ପାଠଶାଠର ଆହୁରି ମଧ୍ୟ କିଛି ନିଜସ୍ୱ ଲାଭ ଅଛି । ମୁଁ ଅନ୍ତତଃ ଆପତ୍ତି କରିବାର କୌଣସି କାରଣ ଦେଖନ୍ତି ନାହିଁ, ଯଦି ମାଟ୍ରିକ ପର୍ଯ୍ୟନ୍ତ ପଢି କେହି ବଢେଇ କମାର କାମ ଶିଖିବାକୁ ଯାନ୍ତି । ବଢେଇ କମାର କାମ ଯେ ଖରାପ କାମ ନୁହେଁ, ଏ କଥା ବୁଦ୍ଧିମାନ୍ ବ୍ୟକ୍ତି ମାତ୍ରକେ ସ୍ୱୀକାର କରିବେ । କିନ୍ତୁ ଖ୍ରୀଷ୍ଟୀୟ ସମାଜର ପାଠର ମାତ୍ରା ବେଶି ହୋଇ ପଡିଲାଣି, ଏଣିକି ବିପଜ୍ଜନକ ହେବ; ଅତଏବ ଏଭଳି ପାଠ ଯୋଉ ଇସ୍କୁଲ ସରବରାହ କରେ, ତାକୁ ବନ୍ଦ କରିବା ଦରକାର—ଏହିଭଳି ପ୍ରସ୍ତାବର ଯୁକ୍ତିଯୁକ୍ତତା ଅନୁଭବ କରିବାର ଶକ୍ତି ମୋ ପରି ମୋଟାବୁଦ୍ଧିଆ ଲୋକ ପକ୍ଷରେ ସମ୍ଭବ ନୁହେଁ । ବରଂ ଏ ପ୍ରସ୍ତାବର ମାରାତ୍ମକତା ବେଶି କରି ଅନୁଭୂତ ହେବ, ଯଦି ଏହା ପଛରେ ଲୁଚିକରି ରହିଛି ଯେଉଁ ଅଭିସନ୍ଧିଟି ତାକୁ ଦେଖି ପାରିବ । ଅର୍ଥାତ୍ କୌଣସି ଜାତିର ମେରୁଦଣ୍ଡକୁ ଯଦି ଭାଙ୍ଗି ଦେବାକୁ ଇଚ୍ଛା କର ଏବଂ ତାକୁ ଯଦି ସଦା-ବେଳେ କେତେକ ବ୍ୟକ୍ତିବିଶେଷର ଅବା କୌଣସି ଅନୁଷ୍ଠାନବିଶେଷର ପଦାନତ କରି ରଖିବାକୁ ଇଚ୍ଛା କର, ତାହା ହେଲେ ତା ପାଟିକୁ ବନ୍ଦ କରି, ସାଧାରଣ ଶିକ୍ଷା ଲାଭ କରିବାର ସୌଭାଗ୍ୟରୁ ତାକୁ ବଞ୍ଚିତ କର । ତାହାହେଲେ ତାର ମନ ଜଳିଯାଉଥିଲେ ମଧ୍ୟ ସେ ନିଆଁକୁ ଉଦ୍‌ଗାର କରିବା ଭଳି କଥା ତା ମୁହଁରେ ନ ଥିବ କି ବୁଦ୍ଧି ମୁଣ୍ଡରେ ନ ଥିବ । ଆଉ ଶାନ୍ତିନିଧି ବାବୁ ମିଶନର ଯେଉଁ ଅର୍ଥାଭାବ କଥା କହିଲେ,ସେ ମିଶନର ଅନ୍ତରଙ୍ଗ ଲୋକ ହେବାରୁ ତାଙ୍କର ସେକଥା କହିବାର ଅନ୍ତତଃ ଅଧିକାର ସମ୍ବନ୍ଧରେ କେହି ପ୍ରଶ୍ନ କରି ପାରିବେ ନାହିଁ । କିନ୍ତୁ ଆମେ ବାହାରର ଲୋକେ ମିଶନର ବାହାରର କାର୍ଯ୍ୟକଳାପରୁ ମିଶନକୁ ବିଚାର କରୁ । ଆମେ ଯେତେବେଳେ ଦେଖୁଛୁ ମିଶନ ଫିରିଙ୍ଗି ଜାତି

ସକାଶେ ଯୋଉ ଇସ୍କୁଲଟି ରଖିଛନ୍ତି—ଯଦିବା ଏ ଫିରଙ୍ଗି ଏ ମିଶନର ଲୋକ ନୁହନ୍ତି, କି ଓଡ଼ିଶାର ଅଧିବାସୀ ନୁହନ୍ତି;ମାତ୍ର ସ୍ବରଅତୁ ଯାଉଣ୍ଥା ହୋଇ ଅସନ୍ତି, —ଅର୍ଥାଭାବ ସକାଶୁ ସେ ଇସ୍କୁଲ ବନ୍ଦ କରିବାର ବ୍ୟବସ୍ଥା କରା ହେଉ ନାହିଁ । ବର୍ଷକୁ ବର୍ଷ ହଜାର ହଜାର ଟଙ୍କା ବ୍ୟୟ କରାଯାଉଛି; ଯେତେବେଳେ ମିଶନର ବାସ୍ତବିକ ଯେ ଅର୍ଥାଭାବ ଘଟିଛି, ଏକଥା ସ୍ୱୀକାର ନ କଲେ ଅନ୍ତତଃ ଆମକୁ କେହି ଦୋଷ ଦେବ ନାହିଁ । ଅବଶ୍ୟ ଏହାର ଆଉ ଗୋଟିଏ କାରଣ ଥାଇ ପାରେ । ଫିରଙ୍ଗିମାନେ ତାଙ୍କର ଜାତି ଭାଇ । ତାଙ୍କ ଦେହରେ ବହୁଥିବା ରକ୍ତ ଯେତେ ପତଳା ହେଉ ନା କାହିଁକି, ପାଣି ତ ନୁହେ ।

ବହୁ ଆନ୍ଦୋଳନ, ଆବେଦନ, ସଭା ସମିତି କରି ସୁଦ୍ଧା ଖ୍ରୀଷ୍ଟୀୟ ସମାଜ ସ୍କୁଲ ସମ୍ବନ୍ଧରେ ମିଶନର 'ମେରିସ୍ୱୟ' ନୀତି ବଦଳାଇ ପାରିଲା ନାହିଁ । ତେବେ ମିଶନ ତାର ଶେଷ ନିଷ୍ପତ୍ତିରେ ଜଣାଇଦେଲା ଯେ, ସେ ଖ୍ରୀଷ୍ଟିୟାନ ସମାଜର କଥାକୁ ଏକାବେଳକେ ଫୋପାଡ଼ି ଦେବାକୁ ଚାହେଁ ନାହିଁ; କାରଣ ମିଶନ ଚାହେଁ ନାହିଁ କୌଣସି ବିଷୟରେ ଖ୍ରୀଷ୍ଟୀୟ ମଣ୍ଡଳୀ ସହିତ ତାର ମତାନ୍ତର ବା ମନାନ୍ତର ହୋଇ ସମ୍ପର୍କଚ୍ଛେଦ ଘଟୁ । ଯଦି ବାଲେଶ୍ୱରର ଖ୍ରୀଷ୍ଟିୟାନ ସମାଜ ଦଳବଦ୍ଧ ହୋଇ ସ୍କୁଲର ସମ୍ପୂର୍ଣ୍ଣ ବ୍ୟୟଭାର ନିଜ ମୁଣ୍ଡ ଉପରକୁ ନିଅନ୍ତି, ତାହାହେଲେ ମିଶନ ସ୍କୁଲ ଭାଙ୍ଗିବ ନାହିଁ; ସମାଜର ମୁଣ୍ଡ ଉପରକୁ ସେ ଭାର ଖସେଇଦେବ ଏବଂ ସ୍କୁଲର ସ୍ଥାୟିତ୍ୱ ସମ୍ବନ୍ଧରେ ସମାଜର ଯେପରି ସମ୍ପୂର୍ଣ୍ଣ ଦାୟିତ୍ୱ ରହିବ, ଏ ବିଷୟ ଉପରିସ୍ଥ ଶିକ୍ଷାବିଭାଗକୁ ଜଣାଇବାର କଷ୍ଟ ମଧ୍ୟ ସ୍ୱୀକାର କରିବ । ମିଶନ ଚାହେଁ ନାହିଁ ଏଥିରୁ କେହି ଯେମିତି ବୁଝନ୍ତି, ଯେ ମିଶନ ଖ୍ରୀଷ୍ଟିୟାନ ସମାଜ ସହିତ ସ୍କୁଲ ଚଳାଇବା ବିଷୟରେ ସମ୍ପୂର୍ଣ୍ଣ ଅସହଯୋଗ କରିବ । ମିଶନ କେବଳ ବ୍ୟୟଭାର ବୋହିବ ନାହିଁ କି ଆୟ ନିମନ୍ତେ ଦାୟୀ ହେବ ନାହିଁ । କିନ୍ତୁ ଏତେବଡ଼ ଦାୟିତ୍ୱପୂର୍ଣ୍ଣ ଦାନ ସମାଜକୁ ଦେଉଥିବାରୁ ସ୍କୁଲ ପରିଚାଳନା ପାଇଁ ଯେଉଁ ସମିତି ଗଢ଼ା ହେବ, ସେଥିରେ ଶାନ୍ତିନିଧି ବାବୁ-ପ୍ରମୁଖାତ୍ ମିଶନର ଉଚ୍ଚକର୍ମଚାରୀମାନଙ୍କ ନିମନ୍ତେ ମିଶନର ପ୍ରତିନିଧି ସ୍ୱରୂପେ ବିଶିଷ୍ଟ ସ୍ଥାନ ନିର୍ଦ୍ଦିଷ୍ଟ ହୋଇ ରହିବ ।

ଏ ପ୍ରସ୍ତାବ ଶୁଣି ଖ୍ରୀଷ୍ଟିୟାନ ସମାଜର କେହି କେହି କହିଲେ, 'ହେଲ ନାହିଁ ହେଲ ପାହିଁ। ପୁଣି କାହିଁକି କମ୍ପାର ହୋଇ ପଶିବ?' ଧୀରେନ୍ଦ୍ର କହିଲା, 'ପକ୍କା ଘରଣୀ ଯେତେବେଳେ ମାଛ ଭାଜି ବସେ, ସେ କଣ ତା ସକାଶେ ଘରୁ ତେଲ ଖରଚ କରେ ? ଏ ହେଉଛି ମାଛ ତେଲରେ ମାଛ ଭାଜିବା। ତୁମ୍ଭେ ମାଛ ହୋଇ ଭଜା ହେବ, ପୁଣି ତୁମକୁ ଭାଜିବାରେ ଯୋଉ ତେଲ ଖରଚ ହେବ, ସେ ତେଲ ଯେବେ ତମଠୁଁ ନ ବାହାରିଲା, ତେବେ ଘରଣୀପଣିଆ କୋଉଟି ରହିଲା ? ତେବେ କହିବ କାହାକୁ ? ଘର ତେଙ୍କି କମ୍ପାର। ଗଛ ଯେବେ କୁର୍‌ହାଡର ବେଣ୍ଟ ନ ଯୋଗାନ୍ତା, ତେବେ ଖାଲି ଲୁହା ଫାଳଟାରେ କଣ ଏତେ ସହଜରେ ଗଛ କାଟି ହୁଅନ୍ତା ?'

ପୂର୍ବଖାଦଲରୁ ଆଲବର୍ଟ ବାବୁ ଏହା ଶୁଣି କହିଲେ, 'ନା ଧୀରେନ୍ଦ୍ର, ତୁମେ ମିଶନକୁ ଭୁଲ ବୁଝୁଛ। ମିଶନର ଏ ପ୍ରସ୍ତାବ ମଧ୍ୟରେ ଯେଉଁ ଅଭିପ୍ରାୟ ଅଛି, ତାହା ସତ୍ ଛଡ଼ା ଅନ୍ୟ କିଛି ହୋଇ ପାରେ ନାହିଁ। ଅନ୍ତତଃ ମୁଁ ଯାହା ବୁଝିଛି, ଆମ ବୟସ୍କ ଲୋକଙ୍କର ମତ ହେଉଛି, ମିଶନର ଏହି ପ୍ରକାର ସଦାୟ ସହଯୋଗର ଆନୁକୂଲ୍ୟ ପାଇଲେ ସମାଜ ପକ୍ଷରେ ହାତକୁ ସ୍କୁଲ ନେବା ଏବଂ ତାକୁ ଯଥାପଥ ଭାବରେ ରଖି ଚଳାଇବା ସମ୍ଭବପର ଏବଂ ମଙ୍ଗଳପ୍ରଦ ହେବ। ଯେତେ ହେଲେ ମିଶନ ଆମ ଖ୍ରୀଷ୍ଟିୟାନ ସମାଜର ପଥପ୍ରଦର୍ଶକ, ଧର୍ମ ସମ୍ବନ୍ଧରେ ଯେମିତି, ପାଠଶାଠ ଇତ୍ୟାଦିରେ ମଧ୍ୟ ସେମିତି। ଦେଖ, ମଣ୍ଡଳୀ ସମ୍ମିଳନୀ ତାର ନିଦର୍ଶନ। ଠଙ୍କା ତାଙ୍କର, ଅନେକ କାର୍ଯ୍ୟକାରୀ ମଧ୍ୟ ତାଙ୍କର; ତଥାପି ସେମାନେ କେମିତି ଏ ସବୁ ବିଷୟର ତଦ୍‌ବିର ଏବଂ ତଦାରଖ ମଣ୍ଡଳୀ ସମ୍ମିଳନୀର ଅଧୀନସ୍ଥ କରିଛନ୍ତି। ସ୍ୱୀକାର କରିବାକୁ ହେବ, ସେମାନେ ସ୍ୱଇଚ୍ଛାରେ ଆସି ଆପଣାମାନଙ୍କୁ ମଣ୍ଡଳୀ ସମ୍ମିଳନୀର ବଶୀଭୂତ କରିଛନ୍ତି। ଏଥିରୁ ସ୍ପଷ୍ଟ ଜଣା ପଡ଼ୁଛି, ସେମାନଙ୍କର ଉଦ୍ଦେଶ୍ୟ ମହତ୍, ଅର୍ଥାତ୍ ଖ୍ରୀଷ୍ଟିୟାନ ସମାଜକୁ ସେମାନଙ୍କର ଆରବ୍ଧ କାର୍ଯ୍ୟମାନଙ୍କରେ ଉତ୍ସାହିତ କରିବାକୁ। ଏ ସ୍କୁଲର କାର୍ଯ୍ୟ ମଧ୍ୟ ଠିକ୍ ସେହିପରି। ଅତଏବ ସ୍କୁଲ ସମ୍ବନ୍ଧରେ ମିଶନର ସମାଜ ସହିତ

କପର ସମ୍ପର୍କ ହେବ, ଯେ ବିଷୟରେ ଏତେ ଆଇନକାନୁନ୍ ଘାଣ୍ଟି ଜଟିଳ ଗିର କାଟ ନା । ଆଖି ବୁଜି ବିଶ୍ୱାସରେ ଡ଼େଇଁ ପଡ଼ । ମିଶନକୁ ବିଶ୍ୱାସ କରିବ ନାହିଁ ତ ବିଶ୍ୱାସ କରିବ ଆଉ କାହାକୁ ?'

ଉତ୍ତରରେ ଧୀରେନ୍ଦ୍ର କହିଲା, 'ସମାଜର ନେତୃସ୍ଥାନୀୟ ହେଉଛନ୍ତି ଆପଣ-ମାନେ । ଆପଣମାନଙ୍କର ଯାହା ଇଚ୍ଛା କରନ୍ତୁ । ତେବେ ଏ ସମ୍ବନ୍ଧରେ ମୁଁ ଯେବେ ପଦେଅଧେ ସିଧା କଥା କୁହେ, ସେଥିପାଇଁ ମୋର ଦୋଷ ଧରିବେ ନାହିଁ । କାରଣ ଆପଣମାନେ ଜାଣନ୍ତି, ମୁଁ ଯେ ଏତେ ଧାଣି ଓଧାର ହେଉଛି, ତା କିଛି ମୋ ନିଜ ପାଇଁ ନୁହେଁ, ସମାଜ ପାଇଁ । ମିଶନ ସମ୍ବନ୍ଧରେ ଆପଣ-ମାନଙ୍କର ମନୋଭାବ ଯାହା, ତାକୁ ସିଧା କଥାରେ କହନ୍ତି ଦାସମନୋବୃତ୍ତି । ଆଉ ମିଶନର ଆପଣମାନଙ୍କ ପ୍ରତି ଯେଉଁ ମନୋଭାବକୁ ଆପଣମାନେ ଭାବୁ-ଛନ୍ତି ବାତ୍ସଲ୍ୟ, ତାହା ହେଉଛି ପ୍ରଭୁତା । ଏଇ ପ୍ରଭୁତ୍ୱ ସେମାନଙ୍କର ବହୁତ ଦିନର ଅଭ୍ୟାସ । ତେବେ ସମୟର ପରିବର୍ତ୍ତନ ସକାଶୁ ଯାକୁ ଏପରି ନିର୍ଲଜ୍ଜ ରଖି ହେଉ ନାହିଁ; ସେଇଥିପାଇଁ ଯା ଟିକେ ପାଣି ମିଶା ହେଉଛି ଯେପରି ପିଇଲା ବେଳେ କଟୁ ଲାଗିବ ନାହିଁ, ଅଥଚ କାଟୁ କରିବ ଠିକ ପୂର୍ବପରି । ଆଉ ଆପଣମାନେ ମୋତେ ଦୋଷ ଦେଉଛନ୍ତି, ମୁଁ ସ୍କୁଲ ହସ୍ତାନ୍ତରିତ ହେବା ସମ୍ବନ୍ଧରେ ଯେ ସନ୍ଦେହଗ୍ରସ୍ତ ହେଉଛି ସେଥିରେ ଆଇନକାନୁନ୍‌ର ଖୁଣ୍ଟିନାଣ୍ଟି ଭିତରେ ଜଟିଳ ଗିର କାଢିବାକୁ ଯାଇ ଜଟିଳତା ସୃଷ୍ଟି କରୁଛି, ତାହା ଆପଣ-ମାନଙ୍କର ଦେଖିବାର ଭ୍ରମ । ମୁଁ ଏହି ବିଷୟକୁ ମିଶନ ଯେପରି ଦେଖୁଛି ସେହିପରି ମନୁଷ୍ୟର ସାଧାରଣ ଜ୍ଞାନ ବ୍ୟବହାର କରି ଦେଖୁଛି । ଏହାକୁ ଦେବାବେଳେ ମିଶନ ତା ନିଜ ଗଣ୍ଡିକ ଆଇନସଙ୍ଗତ କରି ନିଜ ତରଫର କାଗଜପତ୍ରର ଦୁରସ୍ତ ରଖୁଛି । କାହିଁ ଆଖି ବୁଜି ମିଶନ ବିଶ୍ୱାସରେ ଡ଼େଇଁ ପଡ଼ୁ ନାହିଁ ? ହଉ, ଯେତେବେଳେ ଆପଣମାନଙ୍କର ବଡ଼ ଇଚ୍ଛା ଆଖି ବୁଜି ଏହା ଭିତରକୁ ଡେଇଁବାକୁ, ଆମ ହୋକାଙ୍କ ପରାମର୍ଶରେ ଅଟକିବାର ସ୍କୁଲ ଦାୟିତ୍ୱ ମଧ୍ୟ ଆମ୍ଭେମାନେ ନେବାକୁ ବ୍ୟଗ୍ର ନୋହୁ । ତେବେ ଡ଼େଇଁ ପାରିଲେ

## ଜଳାପାତ

ଦେଖିବ ଯୋଉ ଅଠାକାଣ୍ଡିଆ ଭିତର ପଶିଛ, ତାହା ହେଉଛି ଗୋଟିଏ ପେଞ୍ଚ; ଜିଲିପିର ପେଞ୍ଚ ପରି ମିଠା; କିନ୍ତୁ ଅଠାରେ ଲଠର ପଠର ହେଉଥିବ, ସହଜରେ ବାହାରି ପାରିବ ନାହିଁ ।

## [ ଗୁରୁ ]

ବାଲେଶ୍ୱରର ଖ୍ରୀଷ୍ଟିୟାନ ସମାଜ ଯେ କେବଳ ଆନ୍ଦୋଳିତ ହେଉଥିଲା, ସ୍କୁଲ ସମ୍ପର୍କୀୟ ପ୍ରଶ୍ନର ମନ୍ଥନରେ, ତାହା ନୁହେଁ । ତାହାର ଆଧ୍ୟାତ୍ମିକ ଜୀବନ ମଧ୍ୟ ଆନ୍ଦୋଳିତ ହେବାକୁ ଲାଗିଲା ଧର୍ମର ଉଦ୍ଦୀପନାରେ । ଧର୍ମର ଏ ଉଦ୍ଦୀପନା ଆସି ପହଞ୍ଚିଲା କଲିକତାରୁ ଆଗତ ସ୍ୱଜେନ୍ ଫକୀର ସାଙ୍ଗରେ । ଧର୍ମ ଅଧିକାଂଶ ଖ୍ରୀଷ୍ଟିୟାନଙ୍କ ମଧ୍ୟରେ ଦୈନନ୍ଦିନ ଜୀବନ ସହିତ ସବୁ ସମ୍ପର୍କ ଛିଣ୍ଡାଇ ଆସି ଆଶ୍ରୟ ନେଇଥିଲା କେବଳ ରବିବାର ସକାଳ ଆଉ ଉପରଓଳି ଗୀର୍ଜାଘର ଭିତରେ । ଅର୍ଥାତ୍ ସାଧାରଣଙ୍କ ସକାଶେ ଧର୍ମର ଅର୍ଥ ଥିଲା ରବିବାର ଦିନ ଦୁଇ ବେଳା ଗୀର୍ଜାକୁ ଯିବା, ସେଠି ବଞ୍ଚ ପାଣ୍ଡିରେ ଗୀତ ବୋଲିବା ଆଉ ଶାସ୍ତ୍ର ପାଠ, ଶିକ୍ଷା ଏବଂ ପ୍ରାର୍ଥନା ଶୁଣିବା ଅବା ନ ଶୁଣିବା । ଧର୍ମ ଯେ ଅନ୍ତରର ବସ୍ତୁ, ତାର ଉନ୍ମାଦନା ଯେ ଭିତରୁ ଉଚ୍ଛୁଳି ଉଠି ବାହାରେ ରସର ସ୍ରୋତ ବୁହାଇଦିଏ ଏ ଅଭିଜ୍ଞତା ସ୍ୱଜେନ୍ ଫକୀରର ସଙ୍ଗ ଲାଭ କରି ବାଲେଶ୍ୱରର ଯେ କେତୋଟି ଲୋକ ପ୍ରଥମ କରି ପାଇଲେ ସେମାନଙ୍କ ଭିତରେ ଭାବପ୍ରବଣ ଧୀରେନ୍ଦ୍ର ଜଣେ । ଏ ଉତ୍ସାହରେ ମଧ୍ୟ ଯୋଗ ଦେଇଥିଲେ କେତେଗୁଡ଼ିଏ ନଷ୍ଟଚରିତ୍ର ଯୁବକ ଏବଂ ଯୁବତୀ; ବିଶେଷ କରି ସ୍ୱଜେନ ଫକୀରର ଗାନରେ ପ୍ରଭାବିତ ହୋଇ । ସ୍ୱଜେନ ଫକୀରର ସଂସ୍ପର୍ଶ ଯେତେବେଳେ ସେମାନଙ୍କୁ ମଦଖିଆ ପ୍ରଭୃତି ନାନା କୁକାର୍ଯ୍ୟରୁ ବିରତ କଲା, ଧୀରେନ୍ଦ୍ର ମନପ୍ରାଣ ଢାଳି ସେମାନଙ୍କ ସଙ୍ଗରେ ମିଶିବାକୁ ଲାଗିଲା । ଏ ଦଳ ସମାଜର ଧର୍ମୋନ୍ନତି ବିଷୟରେ ସଚେଷ୍ଟ ହେବା ସଙ୍ଗେ ସଙ୍ଗେ ଆକ୍ରମଣ କଲେ ବେତନଭୋଗୀ ଧର୍ମପ୍ରଚାରକଙ୍କର ଦୋକାନଦାରୀ ଧର୍ମବ୍ୟବସାୟ ବିରୁଦ୍ଧରେ ଏବଂ ସେଥିପାଇଁ 'ସେମାନଙ୍କର, ବିଶେଷ କରି, ସେମାନଙ୍କର ନେତା ଶାନ୍ତନଧିର ବିଷଦୃଷ୍ଟିରେ ପଡ଼ିଲେ ।

## ସାମର୍ଥ୍ୟ

ସ୍ତ୍ରୀଲୋକଙ୍କ ମଧ୍ୟରେ ଯେ କେତୋଟି ଧର୍ମର ଏ ଉଦ୍ଦୀପନାରେ ଯୋଗ ଦେଇଥିଲେ ଲିଲି ସେମାନଙ୍କ ମଧ୍ୟରୁ ଜଣେ । ଲିଲିର ବାପଙ୍କ ଘର ନେଳିଆ ବାଗରେ । ସେ ବିଧବା ଏବଂ ନିଃସନ୍ତାନ, ଗରିବ ଘରର ଝିଅ ଏବଂ ଗରିବ-ଘର ବୋହୂ । ବିଧବା ହେବା ପରେ ଶଶୁରଘରର ଗଳଗ୍ରହ ନ ହୋଇ, କଟକ ଆସି ଡାକ୍ତରଖାନାରେ ନର୍ସ କାର୍ଯ୍ୟ ଶିକ୍ଷା କରି, ନର୍ସ ହୋଇ ନୀଳ-ଗିରିରେ ନର୍ସ କାର୍ଯ୍ୟ କରିବାକୁ ଯାଇଥିଲା । ସାଙ୍ଗରେ ବୁଢୀମାକୁ ନେଇ ଦୀର୍ଘ ତେରବର୍ଷ ନୀଳଗିରି ରାଜ୍ୟରେ ରହି ବେଶ୍ ରୋଜଗାର କରିଥିଲା ଏବଂ ଉକ୍ତ ରୋଜଗାର ଦ୍ୱାରା ନେଳିଆବାଗରେ ଥିବା ବାପର ଡିହ ଉପରେ କୋଠା ପକା-ଘର ଏବଂ କିଛି ଜମିଜମା ମଧ୍ୟ କରିଥିଲା । ନୀଳଗିରିରେ କଣ ଗୋଳମାଳ ହେବାରୁ କାର୍ଯ୍ୟରେ ଇସ୍ତଫା ଦେଇ ବାଲେଶ୍ୱରକୁ ଫେରି ଆସି ନିଜ ଘରେ ରହିଲା ଏବଂ ସ୍ୱାଧୀନ ଭାବରେ ନର୍ସ ବ୍ୟବସାୟ କରି ବେଶ୍ ଦୁଇପଇସା ରୋଜ-ଗାର କରୁଥିଲା । ରାଜେନ୍ ଫକୀରର ଧର୍ମୋଦ୍ଦୀପନାରେ ଯୋଗ ଦେବାବେଳକୁ ତାକୁ ତିରିଶ ବର୍ଷ, ଯୌବନର ସୀମା ଟପି ନାହିଁ । ଅନେକ ସମୟରେ ବିଶେଷ କରି ଲିଲି ନର୍ସ ଘରେ ଏହି ଧର୍ମୋତ୍ସାହୀ ଦଳର ସନ୍ଧ୍ୟା ବୈଠିକ ବସେ ଧ୍ୟାନ, ପ୍ରାର୍ଥନା, ଗାନ ଏବଂ ଶାସ୍ତ୍ରାଲୋଚନା ପାଇଁ । ଦିନେ ଏହିପରି ଗୋଟିଏ ସଭାରୁ ଆସି ଧୀରେନ୍ଦ୍ର ବାପଙ୍କୁ କହିଲା, 'ବାବା, ମୁଁ ସବୁ ଛାଡିଛି ଧର୍ମ ପ୍ରଚାର କାର୍ଯ୍ୟ ବିନା ବେତନରେ କରିବି ।' ବାପ ତରୁଣମତି ପୁଅର ସ୍ୱାଧୀକ୍ୟ ବୁଝିପାରି କହିଲେ,'ମୋର କିଛି ଆପତ୍ତି ନାହିଁ; ତେବେ ତୋର ପାଠପଢା ସାରି ତୁ ନିଜ ଇଚ୍ଛା ଅନୁସାରେ ଏ କାର୍ଯ୍ୟ କରିପାରୁ ।'

ଧୀରେନ୍ଦ୍ର—'ମୁଁ ଯେତେବେଳେ ଓକିଲ ହେବ ନାହିଁ, ଓକାଲତି ଆଉ ଅକାରଣେ ପଢିବି କାହିଁକି ?'

ବାପ—'ଓକିଲ ନ ହୋଇପାରୁ; କିନ୍ତୁ ଓକାଲତି ପଢି ପାଶ କରି ପ୍ରଭୁଙ୍କର କାର୍ଯ୍ୟ କରିବାରେ କୌଣସି ବାଧା ନାହିଁ । ବିଶେଷ କରି ଆଇନ

ଜାଣିଥିଲେ, ଅନେକ ଲୋକଙ୍କର ଉପକାର କରିପାରିବୁ । ବଙ୍ଗ ଦେଶର ବିଖ୍ୟାତ ଖ୍ରୀଷ୍ଟିଆନ ପ୍ରଚାରକ ମଧୁସୂଦନ ବାବୁ ଉକିଲ ଥିଲେ ।'

ବାପର ଏ ମନ୍ତବ୍ୟ ଶିରୋଧାର୍ଯ୍ୟ କରି ଧୀରେନ୍ଦ୍ର ଛୁଟି ପରେ କଲିକତା ଗଲା, ଓକାଲତି ପଢା ଶେଷ କରିବାକୁ ।

ଆଠ ମାସ ପରେ ଯେତେବେଳେ ଓକାଲତିର ଶେଷ ପରୀକ୍ଷା ଦେଇ ଧୀରେନ୍ଦ୍ର ବାଲେଶ୍ୱର ଫେରିଲା, ଦେଖିଲା ଧର୍ମର ଯେଉଁ ବୀଜ ସିଏ ବୁଣିଥିଲା, ତାର ଗଛ ମରୁଡ଼ ହୋଇଛି ଦୁଇ କାରଣରୁ । ଧର୍ମର ଏହି ଉଦ୍‌ଗତ ଅଙ୍କୁରଟି ସ୍ୱଚ୍ଛନ୍ଦ ଭାବରେ ବଢିବା ପାଇଁ ବାହାରୁ ଅର୍ଥାତ୍ ଖ୍ରୀଷ୍ଟୀୟ ସମାଜ ବା ମଣ୍ଡଳୀରୁ ଉତ୍ସାହର ଅନୁକୂଳ ଆବହାଓଆ ପାଇବା ପରିବର୍ତ୍ତେ ପାଇଛି ସୀମିତ ବନ୍ଧୁତା ଅବା ନିର୍ମମ ଉଦାସୀନତା ଏବଂ ତେର ମଧ୍ୟ ଭିତରର ସେ ଶକ୍ତି ପାଇବାଭଳି ଜୀବନର ଗଭୀରତର ସ୍ତର ପର୍ଯ୍ୟନ୍ତ ପହଞ୍ଚି ନାହିଁ, ଯାହାଦ୍ୱାରା ପ୍ରଲୋଭନର ଆକ୍ରମଣକୁ ଉପେକ୍ଷା କରି ବଢି ଉଠିବ ଜୀବନ ଫଳପ୍ରସୂ ହେବା ପର୍ଯ୍ୟନ୍ତ । ଏହାର ଫଳ ହୁଏ ଭୀଷଣତର । କାରଣ ମାନବ-ଜୀବନର ଅନ୍ୟାନ୍ୟ ବିଷୟରେ ଯେପରି ଧର୍ମ ସମ୍ପର୍କରେ ମଧ୍ୟ ସେହିପରି କ୍ରିୟା ପ୍ରତିକ୍ରିୟାର ନିୟମ କାର୍ଯ୍ୟ କରେ । ଧର୍ମ ଯେତେବେଳେ ଅଧିକାରଚ୍ୟୁତ ହୁଏ, ସ୍ଥାନ ଶୂନ୍ୟ ପଡିରହେ ନାହିଁ, ନାନା ଅଧର୍ମ ଆସି ସେଠି ବସା ବାନ୍ଧନ୍ତି । ବିଶେଷରେ ସେ ପ୍ରଥମେ ଥିଲା ଦୁର୍ବୃତ୍ତ; କିନ୍ତୁ ସାମୟିକ ଉତ୍ତେଜନାର ମୋହରେ କିଛି କାଳ ସଦାଚରଣ କରେ, ତାଠି ଧର୍ମହୀନତାର ପ୍ରତିକ୍ରିୟା ଆରମ୍ଭ ହେଲେ ତାର ଶେଷ ଦଶା ପ୍ରଥମ ଦଶା ଅପେକ୍ଷା ଶତଗୁଣ ଭୀଷଣତର ହୁଏ । ସେଥିପାଇଁ ଧୀରେନ୍ଦ୍ର ଯେତେବେଳେ ବାଲେଶ୍ୱର ଫେରିଲା, ଦେଖିଲା, ଖ୍ରୀଷ୍ଟିୟାନମଣ୍ଡଳୀ ବାତ୍ୟାବିକ୍ଷୁବ୍ଧ ସମୁଦ୍ର ପରି ଆନ୍ଦୋଳିତ ହେଉଛି । ଏହି ଆନ୍ଦୋଳନର କାରଣ ହେଉଛି ଲିଲି ନର୍ସ । ଲିଲି ନର୍ସର ପାପ ଗର୍ଭ ଧରାପଡିଛି ।

ଯେଉଁ ଦିନ ଲିଲିର ବିଷୟ ମଣ୍ଡଳୀର ବାହୁର-ସଭାରେ ପଡିବାର କଥା, ସେ ଦିନ ସନ୍ଧ୍ୟାବେଳା ଘଣ୍ଟିବାର ବହୁ ପୂର୍ବରୁ ଗୀର୍ଜାଘର ସ୍ଥାନୀୟ ଖ୍ରୀଷ୍ଟିୟାନ-

ମାନଙ୍କର ଉପସ୍ଥିତିରେ ଗମ୍ ଗମ୍ ହେଉଛି । ସାଧାରଣତଃ ମଣ୍ଡଳୀର ପ୍ରାର୍ଥନା ସଭାରେ ଯେତେ ଲୋକ ହୁଅନ୍ତି, ତାର ଦଶଗୁଣ ଲୋକ ଉପସ୍ଥିତ ହୁଅନ୍ତି ବାତ୍ସର-ସଭାରେ । ବୈଜ୍ଞାନିକମାନଙ୍କ ମତରେ ଏହି ଦୁର୍ଲ୍ଲଭ ମାନବ ଜନ୍ମ କୁଆଡ଼େ ନାନା ଜୀବଜନ୍ତୁ ପଶୁପକ୍ଷୀ କୀଟ ପତଙ୍ଗର ସ୍ତର ଭିତର ଦେଇ ଗତି କରିଛି । ଅନ୍ତତଃ ତାର ଶାରୀରିକ ସୌସାଦୃଶ୍ୟ ଅନ୍ୟ ସମସ୍ତ ଜୀବଜନ୍ତୁଙ୍କ ସହିତ ପୂର୍ଣ୍ଣ ପରିମାଣରେ ନ ଥିଲେ ସୁଦ୍ଧା ଅନ୍ତତଃ ତାର ମାନସିକ ପ୍ରବୃତ୍ତି ଭିତରେ ଅନ୍ୟାନ୍ୟ ପଶୁପକ୍ଷୀଙ୍କର ପ୍ରବୃତ୍ତିର ଯେ ଶୀର୍ଣ୍ଣାବଶେଷ ଯଥେଷ୍ଟ ପରିମାଣରେ ରହିଛି ଏ କଥା ସହଜରେ ଅସ୍ୱୀକାର କରି ହେବ ନାହିଁ । ମଣ୍ଡଳୀର ବାତ୍ସର-ସଭାରେ ନିୟମିତ ଭାବରେ ଉପସ୍ଥିତ ହେବା ନିମନ୍ତେ ଖ୍ରୀଷ୍ଟିୟାନମାନଙ୍କର ଯେଉଁ ଅତ୍ୟଧିକ ଆଗ୍ରହ, ତାହା ହେଉଛି ସାର୍ଗୁଣୀର ମତ ପାଖକୁ ଆସିବା ସକାଶେ ଯେଉଁ ଆଗ୍ରହ ତାର ଅନୁରୂପ । ଯାହା ପୂତିଗନ୍ଧମୟ ତାକୁ ଘାଣ୍ଟିବାରେ ଆନନ୍ଦ ଅନୁଭବ କରିବାର ଇଚ୍ଛା ଯେ କେବଳ କେତେକ ଇତର ପଶୁପକ୍ଷୀଙ୍କ ଭିତରେ ଦେଖାଯାଏ ତାହା ନୁହେଁ;ଏ ପ୍ରକାର ଇତରତାର ନିଦର୍ଶନ ମନୁଷ୍ୟ ସମାଜରେ ମଧ୍ୟ ଯଥେଷ୍ଟ ଅଛି । ପରର ଛିଦ୍ର ଅନ୍ୱେଷଣ କରିବା, ଅପରର ବିଷୟନେଇ ଚର୍ଚ୍ଚା କରିବା ପରି ମୁଖରୋଚକ ହଜମି ଜିନିଷ ବୋଧହୁଏ ଦୁନିଆରେ ଦୁଇଟି ନାହିଁ । ବିଶେଷତଃ ଅକର୍ମା ଅଳସୁଆଙ୍କର ଭାତ ହଜମ କରିବା ପକ୍ଷରେ ଏପରି ବାତୁଳତା ଯଥେଷ୍ଟ ସାହାଯ୍ୟ କରେ ।

ଧୀରେନ୍ଦ୍ର ଯେତେବେଳେ ଆସି ବାତ୍ସର-ସଭାରେ ପହଞ୍ଚିଲା, ସେତେବେଳକୁ ସଭା କାର୍ଯ୍ୟ ଆରମ୍ଭ ହେବା ଉପରେ,ଅର୍ଥାତ୍ ସଭାପତି ଶାନ୍ତିନିଧି ବାବୁ ପ୍ରାରମ୍ଭିକ ପ୍ରାର୍ଥନା ଉତ୍ସର୍ଗ କରୁଛନ୍ତି । ପ୍ରାର୍ଥନା ପରେ ଲିଲିର ବିଷୟ ଅନୁସନ୍ଧାନ କରିବା ନିମନ୍ତେ ଯେଉଁ କମିଟି ନିଯୁକ୍ତ କରି ହୋଇଥିଲା, ସେହି କମିଟିର ମୁଖପାତ୍ର ଶାନ୍ତିନିଧି ବାବୁ ମୌଖିକ ରିପୋର୍ଟ ନେବାକୁ ଆରମ୍ଭ କଲେ । କହିଲେ, ଲିଲିର ଯେ ପଦସ୍ଖଳନ ହୋଇଛି ସେଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ଯାହାର ଆଖି ଅଛି ସେ ତାହା ଦେଖି ପାରିବ । ଅବଶ୍ୟ କମିଟି ଲିଲିକୁ

ପଚ୍ଚରିବାରେ ସେ କୌଣସି ଉତ୍ତର ଦେଲା ନାହିଁ, ଚୁପ୍ କରି ରହିଲା । ଅବଶ୍ୟ ଏପରି ମୌନ ରହିବା ଅର୍ଥ ମାନିନେବା । ସେ କିନ୍ତୁ ତାହା ଅନ୍ତତଃ ବାକ୍ୟତଃ କରି ନାହିଁ । ତାର ମାକୁ ପଚ୍ଚରିବାରେ ସେ ଝିଅର ପାପଗର୍ଭ ସାତମାସ ହେଲା ହୋଇଛି ବୋଲି ସ୍ୱୀକାର କଲା; କିନ୍ତୁ କାହା ଆଡ଼ୁ ହୋଇଛି କହି ପାରିଲା ନାହିଁ । ଅତଏବ ଲିଲି ତାହାର ଦୋଷ ସ୍ୱୀକାର ନ କରିବାରୁ ଲିଲିକୁ ମଣ୍ଡଳୀ-ଚ୍ୟୁତ କରାଯାଉ ବୋଲି କମିଟି ସୁପାରିସ କରୁଛନ୍ତି ।

ଧୀରେନ୍ଦ୍ର ଏଯାବତ୍ ଚୁପ୍ ହୋଇ ବସିଥିଲା; ଉଠି ଧୀର ଭାବରେ ପଚ୍ଚରିଲା, 'ସଭାପତି ମହାଶୟ, ମୁଁ ଗୋଟିଏ ବିଷୟ ବୁଝି ପାରିଲି ନାହିଁ । ଆପଣ କହିଲେ, ଲିଲି ସାତମାସ ହେବ ଅନ୍ତଃସତ୍ତ୍ୱା । ଯାହାର ଦିଟା ଆଖି ଅଛି, ସେ ତାହାର ଅବସ୍ଥା ସ୍ପଷ୍ଟ ଭାବରେ ଦେଖି ପାରିବ । ଅଥଚ ପୁଣି କହୁଛନ୍ତି, ସେ ତାର ପାପ ସ୍ୱୀକାର କଲା ନାହିଁ । ଅତଏବ ତାକୁ ଶାସ୍ତି ଦିଆଯାଉ ଅର୍ଥାତ୍ ମଣ୍ଡଳୀ ବାହାରୁ ତାର ନାମ ଖାରଜ କରାଯାଉ । ତାର ଯେଉଁ ପାପ, ସେ ତ ଆପେ ଆପଣାକୁ ପ୍ରକାଶ କରୁଛି; ଆଉ ସେ ପାପ ସ୍ୱୀକାର କରୁ ନାହିଁ ବୋଲି କେମିତି କୁହା ହେଉଛି ?'

ଶାନ୍ତିନିଧି—'ସେ ଯେ ପାପ କରିଛି, ଏକଥା ନିଜ ମୁହଁରେ ସ୍ୱୀକାର କରି ନାହିଁ ଏବଂ ଏହି ପାପ କାର୍ଯ୍ୟରେ ଯେଉଁ ପୁରୁଷ ତାହାର ସହକର୍ମୀ, ତାହାର ନାମ ସେ କୌଣସିମତେ ପ୍ରକାଶ କରୁ ନାହିଁ । ଯଦି ବା ତାହାର ଶରୀର ତାର ପାପକାର୍ଯ୍ୟ ପ୍ରଖ୍ୟାପନ କରୁଛି, ତଥାପି ସ୍ୱୀକାରୋକ୍ତି ତାର ନିଜ ମୁହଁରୁ ନ ବାହାରିବାରୁ ସେ ଯେ ନିଜ ପାପ ନିମନ୍ତେ ଅନୁତପ୍ତ ତାହା ମଣ୍ଡଳୀ ସମ୍ମୁଖରେ ପ୍ରକାଶ କରୁ ନାହିଁ ।'

ଧୀରେନ୍ଦ୍ର—ସ୍ୱୀକାର କଣ କେବଳ ଉକ୍ତିରେ ହୁଏ ଏବଂ ସେ ଉକ୍ତି କେବଳ କର୍ଣ୍ଣରେ ପ୍ରବେଶ କଲେ କଣ ଗ୍ରହଣଯୋଗ୍ୟ ହୁଏ ? ଯେଉଁ ସ୍ୱୀକା-ରକୁ ଆଖି ଦେଖିପାରେ ତାହା କଣ ମଣ୍ଡଳୀର ଗ୍ରହଣୀୟ ନୁହେ ? ଭାଇମାନେ

ଅନ୍ତତଃ ମୁଁ ଯେତେଦୂର ଦେଖିପାରୁଛି, ଭିଲ୍ ସମ୍ପର୍କରେ ମଣ୍ଡଳୀ ଏ ଯେଉଁ ଶାସନନୀତି ଗ୍ରହଣ କରିବାକୁ ଅନୁରୁଦ୍ଧ ହେଉଛି, ତାହାର ମୂଳରେ କୌଣସି ବ୍ୟକ୍ତିଗତ ଆକ୍ରୋଶ ରହିଛି, ଅବା ଓଡ଼ିଶାର ଖ୍ରୀଷ୍ଟିୟାନ ମଣ୍ଡଳୀର ନାବାଳକ କଟି ନାହିଁ, ଯେଉଁ ସକାଶରୁ ତାର ବାଲ୍ୟସୁଲଭ ଚପଳତା ଯଥେଷ୍ଟ ଆପ୍ୟାୟିତ ହୁଏ, ଯେତେବେଳେ ସେ କାହାକୁ ପଡ଼ିବାର ଦେଖେ ଏବଂ ସେ ଯେ ପଡ଼ିଛି ଏହି କଥାର ହୀନତା ତାର ନିଜ ମୁହଁରେ ତାକୁ ସ୍ୱୀକାର କରାଏ। ଏହା ଯଦି ବ୍ୟକ୍ତିଗତ ଆକ୍ରୋଶର କଥା ହୁଏ, ତେବେ ମୁଁ ପଚାରେ,ଖ୍ରୀଷ୍ଟିୟାନ ସମାଜ କେତେ ଦିନ ତାହାର ପବିତ୍ର ଅନୁଷ୍ଠାନସମସ୍ତଙ୍କୁ ବ୍ୟକ୍ତିଗତ ପ୍ରତିହିଂସାର ପ୍ରଶସ୍ତ ଲୀଳାଭୂମି ହେବାକୁ ଛାଡ଼ିଦେବ, କେତେ ଦିନ ଅନ୍ତଃସାରଶୂନ୍ୟ ବାବଦୂକ ପେଶାଦାର ଧର୍ମଧ୍ୱଜୀମାନଙ୍କର କ୍ରୀଡ଼ନକ କରି ରଖିବ ? ଆଉ ଯଦି ତାହା ନ ହୁଏ, ତେବେ କେତେ ଦିନ ପରେ ସମାଜର ଏ ନାବାଳକ କଟିବ, କେତେ ଦିନ ପରେ ତାର ବୁଦ୍ଧିବୃତ୍ତି ପୂର୍ଣ୍ଣ ବୟସର ସିଦ୍ଧତା ପ୍ରାପ୍ତ ହେବ—ଯାହା ପାଇଲେ ସମାଜ ଅନ୍ତତଃ ବୁଝିପାରିବ, କିଏ ସତ କିଏ ଝୁଟା, କିଏ ଅସଲ, କିଏ ନକଲ ଏବଂ ନକଲ ଯେ କୌଣସି ଉପାୟରେ ସମାଜର ଯେତେ ଉଚ୍ଚ ସ୍ଥାନରେ ପ୍ରତିଷ୍ଠିତ ହୋଇଥାଉ ନା କାହିଁକି, ତାକୁ ଜୋର ସହିତ ଉତ୍ପାଟିତ କରିବାକୁ ତା ବୁକୁରେ ବଳ ଥିବ ? ଭାଇମାନେ, ଆଜି ମଣ୍ଡଳୀର ଏ ବିଚାର ଦେଖି ମୋର ଆଉ ଗୋଟିଏ ଏହିପରି ବ୍ୟଭିଚାରରେ ଧୃତ ସ୍ତ୍ରୀର କଥା ମନେ ପଡ଼ୁଛି। ତାକୁ ସେହି ସମୟର ଧର୍ମଯାଜକମାନେ ଧରି ଆଣି ପ୍ରଭୁଙ୍କ ପାଖରେ ଛିଡ଼ା କରାଇଥିଲେ ଏବଂ ଶାସ୍ତ୍ରର ପଦପ୍ରମାଣ ଉଦ୍ଧାର କରି ତାର ଦଣ୍ଡବିଧାନ ନିମନ୍ତେ ପ୍ରଭୁଙ୍କୁ ବ୍ୟତିବ୍ୟସ୍ତ କରିଥିଲେ। ପ୍ରଭୁଙ୍କର ସେହି ବିଚାରର ବିବରଣ ପୁଣି ଥରେ ପଢ଼ ଏବଂ ଯାହାଙ୍କର ନାମାନୁକ୍ରମେ ନିଜ ସମ୍ପ୍ରଦାୟର ନାମକରଣ କରିଛ, ତାଙ୍କର ପଦାଙ୍କ ଅନୁସରଣ କରି ସେ ନାମ ସାର୍ଥକ କର।"

ଧୀରେନ୍ଦ୍ରର ଏହି ଜ୍ୱାଳାମୟୀ ଭାଷା ସେଠି କେବଳ କାଲ୍ ଅରଣ୍ୟେ ମୂଳା ହୋଇଗଲା। ବିଚାର ସଭା କମିଟିର ସୁପାରିସ ଗ୍ରହଣ କରି ଭିଲ୍‌କୁ

ସମାଜଚ୍ୟୁତ କଲେ; କାରଣ ପ୍ରଶସ୍ତ ମାନବଜାତି ଯେଉଁ ସବୁ ଯୁକ୍ତି-ଯୁକ୍ତତା ଉପରେ ପ୍ରତିଷ୍ଠିତ, ସେ ସବୁ ଯୁକ୍ତି ଏପରି ବସ୍ତୁର ସନ୍ଧ ଗ୍ରହଣ କରେ ନାହିଁ । ତାର ସମସ୍ତ କାର୍ଯ୍ୟ ହାତଟେକା ଭୋଟ ସାହାଯ୍ୟରେ ହୁଏ ।

ଲିଲିକୁ ମଣ୍ଡଳୀଚ୍ୟୁତ କରିବାର ପ୍ରସ୍ତାବ ଯେତେବେଳେ ଗୃହୀତ ହେଲା, ସେତେବେଳେ ଧୀରେନ୍ଦ୍ର ଉଠି କହିଲା, "ଆପଣମାନେ ମଣ୍ଡଳୀର ସଭ୍ୟ ତାଲିକାରୁ ମୋ ନାମ ମଧ୍ୟ କାଟିଦିଅ ।"

ସଭାପତି ପ୍ରଥମେ ହସିବା ପରି ମୁହଁ କଲେ । ସେ ହସ ଶତ୍ରୁର ଧରିବାର ଆନନ୍ଦରେ ବେଶି ଉଜ୍ଜ୍ୱଳ ହୋଇଥିଲା, କି ବହୁଦିନର ଶତ୍ରୁ ଉପରେ ଅତର୍କିତ ଭାବରେ ବୈର ସାଧନ ନିମନ୍ତେ ସେଥିରେ ଯଥେଷ୍ଟ ଅନ୍ଧକାର ଥିଲା, ତାହା କହିବା କଷ୍ଟକର । ସଭାପତି କହିଲେ, "ଧୀରେନ୍ଦ୍ର ବାବୁ, ଏଥିରୁ ଆମ୍ଭେମାନେ କଣ ବୁଝିବା ଯେଉଁ କାରଣରୁ ମଣ୍ଡଳୀ ଲିଲିର ଦଣ୍ଡବିଧାନ କରୁଛି, ସେହି କାରଣରୁ ତୁମ୍ଭେ ନିଜେ ଅଯାଚିତଭାବରେ ମଣ୍ଡଳୀର ଦଣ୍ଡବିଧାନ ନିଜ ଉପରେ ଗ୍ରହଣ କରୁଅଛ ?"

ଗଭୀର ବିରକ୍ତିର ସହିତ ଧୀରେନ୍ଦ୍ର ଉତ୍ତର ଦେଲା, "ମୁଁ ସ୍ୱୀକାର କରୁଛି, ଆପଣମାନଙ୍କର ବୁଝିବା ଶକ୍ତି ଯେ ଅପରିସୀମ, ତାର ଯଥେଷ୍ଟ ନିଦର୍ଶନ ଆପଣମାନେ ଆଜିର ବିଷୟରେ ଦେଇଛନ୍ତି । ମୁଁ ମଧ୍ୟ ବୁଝିପାରୁଛି, ଆପଣ-ମାନଙ୍କର ବୋଧଶକ୍ତିର ଦୌଡ଼ କେତେ ଦୂର, ଯେତେବେଳେ ଏହି ଦୁଷ୍ଟା ସ୍ତ୍ରୀଲୋକଟା ନିଜେ ଅପଦସ୍ଥ ହୋଇ ସୁଦ୍ଧା ନିଜ ପାପର ସହକର୍ମୀ ପୁରୁଷଟିର ନାମ ପ୍ରକାଶ ନ କରି ଆପଣମାନଙ୍କ ପରି ଶିଷ୍ଟ ଲୋକମାନଙ୍କର କୌତୂହଳ ଏବଂ କଷ୍ଟ କଣ୍ଡୁୟନ ବୃଦ୍ଧି କରୁଛି । ଏହି ପାପ ସହିତ ଅମୂଲ-ଚୂଳ ପରିଚିତ ହେବା ନିମନ୍ତେ ଆପଣମାନଙ୍କର ଯେଉଁ ବ୍ୟସ୍ତତା ଏବଂ ବ୍ୟଗ୍ରତା, ତାହା ଦେଖି ସୁଦ୍ଧା କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ,

## ସାମଗ୍ରିକ

ମୁଁ ଏହି ପୁରୁଷଟିର ନାମ ଜାଣିଥିଲେ ସ୍ପୃହା ପ୍ରକାଶ କରନ୍ତି ନାହିଁ, ଆପଣମାନଙ୍କର ଏହି ନିର୍ମମ ଶବବ୍ୟବଚ୍ଛେଦରେ ସାହାଯ୍ୟ କରିବାକୁ ।

"ମୁଁ ବୁଝିଥିଲି, ଧର୍ମର ସାର୍ଥକତା ହେଉଛି ଜଗତର ପ୍ରହାରରେ ଜର୍ଜରିତ ପାପତାପକ୍ଲିଷ୍ଟ ପ୍ରାଣରେ ଶାନ୍ତିର ପ୍ରଲେପ ଦେବାକୁ; ଆପଣମାନଙ୍କ ପରି ଧାର୍ମିକମାନଙ୍କର ରସନା ଏବଂ କଣ୍ଠର କଣ୍ଡୂୟନ ଚରିତାର୍ଥ କରିବାକୁ ନୁହେଁ ।" ଏତିକି କହି ଧୀରେନ୍ଦ୍ର ବାବୁର ସଭାରୁ ଉଠି ଚାଲିଗଲା ।



# ମୁଁ ଅଛି, ମୁଁ ନାହିଁ

ଭାବପ୍ରବଣତାକୁ ଯଦି ଚରିତ୍ରର ଗୋଟାଏ ଦୁର୍ବଳତା ବୋଲି ଧରି, ତାହାହେଲେ ଅବଶ୍ୟ ନିର୍ମଳା ଓ ପ୍ରଫୁଲ୍ଲର ଏହି ଦୁର୍ବଳତା ଥିଲା । ଦେଖିଥିବ, ଗଛପତ୍ରର ସବୁ ଜହ୍ନରାତିରେ କେଡ଼େ ସ୍ନିଗ୍ଧ, କେଡ଼େ ସୁନ୍ଦର ଦେଖାଯାନ୍ତି । ଯେପରି କି ସେତେବେଳେ ପ୍ରକୃତିର ସୌନ୍ଦର୍ଯ୍ୟ ବଢ଼ାଇ ଦିଅନ୍ତି । କିନ୍ତୁ ଅନ୍ଧାର ରାତିରେ ସେହି ଗଛପତ୍ରର ପୁଣି ଭୟ ଜନ୍ମାଇ ପ୍ରକୃତିକୁ ଭୟାନକ କରି ଦେଖାନ୍ତି । ସେହିପରି ଏହି ସ୍ୱାମୀ ସ୍ତ୍ରୀଙ୍କର ଭାବପ୍ରବଣତାର ଶୁକ୍ଳପକ୍ଷ କୃଷ୍ଣପକ୍ଷ ଥିଲା । ଯେତେବେଳେ ଶୁକ୍ଳପକ୍ଷ, ସେତେବେଳେ ସେମାନଙ୍କର ସମସ୍ତ କାର୍ଯ୍ୟ-କଳାପ, ସମସ୍ତ ଆଚାର ବ୍ୟବହାର ଏହି ଭାବପ୍ରବଣତା ସକାଶୁ ଅଧିକ କୌମୁଦୀମୟ, ଅଧିକ ହସହସ, ଅଧିକ ଆନନ୍ଦମୟ; କିନ୍ତୁ କୃଷ୍ଣପକ୍ଷ ବେଳକୁ ଏହି ଭାବପ୍ରବଣତା ତାଙ୍କ ପ୍ରକୃତିକୁ ସେତିକି ପରିମାଣରେ ବିଭୀଷିକା-ମୟୀ କରି ତୋଳୁଥିଲା , ମିଜାସ ସେତିକି ଚିଡ଼ଚିଡ଼ିଆ ହେଉଥିଲା, କଥା କଥାକେ ଭୁଲ ବୁଝା, କଥାକଥାକେ ବିରକ୍ତି ଜନ୍ମୁଥିଲା । ବିବାହର ସ୍ମୃତି ଯେତିକି ପୁରୁଣା ହୋଇଆସିଲା, ତାଙ୍କର ମାସରେ ଏହି ଶୁକ୍ଳପକ୍ଷ ସେତିକି କମିବାକୁ ଲାଗିଲା, କୃଷ୍ଣପକ୍ଷ ବଢ଼ିଲା—ବିବାହିତ ଜୀବନ ବଡ଼ ଅଶାନ୍ତିକର ହେଲା ।

ଏହି ଥିଲା ସ୍ୱଭାବତଃ ଉଭୟଙ୍କର ଦୁରଦୃଷ୍ଟ; ନତୁବା ସ୍ତ୍ରୀପୁରୁଷ ଉଭୟେ ଅନ୍ୟାନ୍ୟ ବିଷୟରେ ଖୁବ୍ ଭଲ । ପ୍ରଫୁଲ୍ଲ ମିତାଚାରୀ, ନ୍ୟାୟପରାୟଣ, ପରିଶ୍ରମୀ, ପତ୍ନୀଗତପ୍ରାଣ, ସାଧାରଣତଃ ନମ୍ରପ୍ରକୃତି ଏବଂ ବୁଦ୍ଧିମାନ୍ । ନିନି—ଅର୍ଥାତ୍ ନିର୍ମଳା—ବେଶ୍ ହସଖୁସି, ପତିପରାୟଣା, ସାଧାରଣତଃ ନମ୍ରପ୍ରକୃତି ଏବଂ ବୁଦ୍ଧିମତୀ । କିନ୍ତୁ ଉଭୟେ ଟିକିଏ ଭାବପ୍ରବଣ, ଉଭୟେ ଟିକିଏ ରାଗୀ । ନିର୍ମଳା ବାହା ହେବା ପୂର୍ବରୁ ରେଭେନ୍ସା ବାଳିକା ବିଦ୍ୟାଳୟରେ ପଢ଼ି ମାଟ୍ରି-

# ସାମସ୍ୟିକ

କ୍ଳ୍ୟାଲେଷନ ପାସ କରିଛି ସତ; ତଥାପି ଛବି ଆଙ୍କିବା, ବାଜା ବଜାଇବା ଓ ସିଲାଇ ଏବଂ କାଠଛାଟରେ ସେ ଯେତେ ମନଯୋଗ ଦେଇଥିଲା, ପଢାପଢିରେ ସେତେ ଦେଇ ନ ଥିଲା । ପ୍ରଫୁଲ୍ଲ ମଧ୍ୟ ସେହିପରି ଏଫ୍. ଏ. ପାସ କରି ଅର୍ଥାଭାବରୁ କମିଶନେରୀ କଚେରୀରେ କିରାଣି କାର୍ଯ୍ୟ କରୁଥିଲା; କିନ୍ତୁ ପଢିବା ସମୟରୁ ପଦ୍ୟ, ଗଳ୍ପ ଓ ଉପନ୍ୟାସ ଲେଖିବା ଅଭ୍ୟାସଟା ବେଶି ଥିବାରୁ କିରାଣୀ କାର୍ଯ୍ୟ କରି ସୁଦ୍ଧା ବାଣୀ-ଆରାଧନାରେ ତ୍ରୁଟି କରୁ ନ ଥିଲା । ଆଉ ସ୍ୱାମୀ ସ୍ତ୍ରୀର ଏହି ସବୁ ଗୁଣରେ ହୃଦୟରେ ଆବେଗ, ଉଚ୍ଛ୍ୱାସର ଉପକରଣଟା ଯେ ବଡ଼ ବେଶି ଥାଏ, ଏ କଥା କାହାରିକୁ କହିଦେବାକୁ ହେବ ନାହିଁ ।

ଗୋଟିଏ ଛୋଟ ଘର ପକ୍ଷରେ ଜଣେ କଳ୍ପନାପ୍ରିୟ ଲୋକ ଯଥେଷ୍ଟ; ଦୁଇ ଜଣ ରହିଲେ ବିପଦ ଅବଶ୍ୟମ୍ଭାବୀ । ଏମାନଙ୍କର ଘର ଏପରି ଲମ୍ବା ଚଉଡା ନ ଥିଲା ଯେ, ସମୟ ବିଶେଷରେ ଯେତେବେଳେ ଦୁଇଜଣଙ୍କର ପୃଥକ୍ ରହିବା ଦରକାର, ଜଣେ ଘରର ଏ ମୁଣ୍ଡ କୋଠରୀ, ଅନ୍ୟ ଜଣ ଅନ୍ୟ ମୁଣ୍ଡ କୋଠରୀକୁ ଯାଇ ସେହି ସମୟ ସକାଶେ ଟିକେ ନିର୍ଜନବାସ କରି ପାରିବ । ପ୍ରଫୁଲ୍ଲ ଯେତେବେଳେ ଅଫିସ କାମ ସାରି ସନ୍ଧ୍ୟାବେଳେ ଋକ୍ଷମୁହାଁ ହୋଇ ଘରକୁ ଫେରି ଆସେ, କ୍ଷୁଧା ଓ ହାକିମଙ୍କ ତିରସ୍କାରର ତାଡନାରେ ଶରୀରର ପିତ୍ତ ନାମକ ପଦାର୍ଥ ଚହଲି କରି ଯେତେବେଳେ ଅତି ଉତ୍କଟ ଭାବରେ ମସ୍ତିଷ୍କକୁ ଆକ୍ରମଣ କରିଥାଏ, ସେତେବେଳେ ଘରେ ଅତି ସାମାନ୍ୟ ତ୍ରୁଟି ଦେଖିଲେ ମୁହଁଟା ମେଘ-ଅନ୍ଧାର ହୋଇଯାଏ; ଆଉ ଦୁର୍ଭାଗ୍ୟବଶତଃ ଯଦି ସେ ଦିନ କୌଣସି କାରଣରୁ କମଳର ମୁହଁଟା ବି ମେଘ-ଅନ୍ଧାର ଦିଶୁଥାଏ, ସେ ସଙ୍ଘର୍ଷ ବିଦ୍ୟୁତ୍ ନ ଚମକାଇ, କମଳର ଚକ୍ଷୁରୁ ବାରି ନ ବରଷାଇ ଶେଷ ହୁଏ ନାହିଁ ।

ମନ ଉପରେ ସମୟର ପ୍ରଭାବ ମଧ୍ୟ କମ ନୁହେ । ସମୟଟା ଯେତେ-ବେଳେ ନିତାନ୍ତ ନୀରସ ବୋଧ ହୁଏ, ଛୁଟି ଦିନର ଉଦାସ ସକାଳଟା

# ମୁଁ ଅଛି, ମୁଁ ନାହିଁ

ଯେତେବେଳେ ବଡ଼ ଭାରି ଭାରି ଲାଗେ, ଆଉ କଟେ ନାହିଁ, କର୍ମମୟ ଦିବସର କ୍ଲାନ୍ତି ଯେତେବେଳେ ସନ୍ଧ୍ୟାକୁ ଅବସାଦକର କରିଦିଏ, ସେତେବେଳେ ଟିକିଏ ଅଡୁଆ ଅସୁବିଧା ହେଲେ ଆଉ ଧୈର୍ଯ୍ୟ ଧରି ହୁଏ ନାହିଁ, କାହାରି ସାଙ୍ଗରେ କଥା କହିବାକୁ ଇଚ୍ଛା ହୁଏ ନାହିଁ, କଥା କହିଲେ ଖାଲି ଯୋଉ କଥାରେ ହାଡ଼ ବାଜିଯିବ, ସେଇ କଥା ମୁହଁରୁ ବାହାରେ ।

ପ୍ରଫୁଲ୍ଲର ମନ ଯେତେବେଳେ ପ୍ରଫୁଲ୍ଲ, ଥରେ ଏହିପରି ସମୟରେ ଆସି କହିଲା—"ନମ; ମୁଁ ଅନେକ ସମୟରେ ତୁମ ସାଙ୍ଗରେ ପଶୁପରି ବ୍ୟବହାର କରେ, ନା ?"

ନମ ପଚାରିଲା, "ତା ମାନେ ?"

ପ୍ରଫୁଲ୍ଲ—ବଲେଇ କୁକୁର ଯେତେବେଳେ ଚଢ଼ିଥାନ୍ତି, ତାଙ୍କ ଲାଙ୍ଗୁଳ ଧରି ଟାଣିଲେ ସେମାନେ ଯେମିତି ଖିଙ୍କାରି ହୁଅନ୍ତି, ଦାନ୍ତ ନିକୁଡ଼ନ୍ତି, ମୁଁ ଅନେକ ସମୟରେ ତମ କଥା ଶୁଣି ସେମିତି ହୁଏ ।

ନମ—ଆଉ ମୁଁ ବା କଣ କିଛି କମ୍ ? ଦେଖ, ତା ହେଲେ ବି ଆମ ମନରେ କିଛି ନ ଥାଏ ।

ପ୍ରଫୁଲ୍ଲ—ରାମଚନ୍ଦ୍ରଃ, ଆମେ କଣ ସତ ସତ କଳିଆ କରୁ ? କିନ୍ତୁ ଯଦିବା ଏହି କଳିଆବେଳେ ଆମ ମନରେ କିଛି ନ ଥାଏ, ତଥାପି ମନରେ ସୁଖଶାନ୍ତି ରହିଁଦିଏ ନାହିଁ, ମନଟା ଖୋଲାସା ଲାଗେ ନାହିଁ । ବାସ୍ତବିକ ଏ କିଛି ନୁହେଁ, ମନର ଗୋଟାଏ ଭାବ । ଏ ପ୍ରକାର ଭାବ ଆସିଲା ବେଳକୁ ଯେବେ ଆମେମାନେ ପରସ୍ପର ସାଙ୍ଗରେ ନ ଲାଗନ୍ତୁ, ସେତିକିବେଳେ ଯଦି ଆମକୁ ଚୁପଚାପ୍ ରହିବାକୁ ଛାଡ଼ିଦିଆଯାନ୍ତା, ତା ହେଲେ ଏ ଭାବ ଶୀଘ୍ର ଚାଲିଯାନ୍ତା । ହୁଏ କଣ କି, ଏପରି ସମୟରେ କେହି ଯେବେ ଟିକେ ଚଡ଼ଚଡ଼ ହୁଏ, ନିଆଁରେ ଘିଅ ଢାଳିଲା ପରି ଲାଗେ ।

# ସାମୟିକ

ନମ—କିନ୍ତୁ ତୁମ ମନର ଅବସ୍ଥା ଯେ ଏ ପ୍ରକାର, ଏହା ଲୋକ ଜାଣିବ କେମିତି ଯେ, ସେତେବେଲେ ତୁମ ସାଙ୍ଗରେ ସାବଧାନ ହୋଇ କଥା କହିବ ?

ପ୍ରଫୁଲ୍ଲ—ଦେଖ, ମୁଁ ମନେ କରୁଛି, ଏଥିପାଇଁ କିଛି ରକମ ସଙ୍କେତ ରଖିବା ଦରକାର । ତା'ପରେ ଟିକେ ଭାବି କହିଲା—"ତୁମେ ଦେଖିଥିବ, ସାହେବମାନଙ୍କ ଫାଟକରେ କାଠର ଗୋଟିଏ ଛୋଟ ବାକ୍ସ ଲଟକା ହୋଇଥାଏ । ସେହି ବାକ୍ସର ଗୋଟିଏ ପାଖରେ ଗୋଟିଏ ଖୋପ ଥାଏ । ଯେତେବେଳେ ସେମାନେ ଘରେ ଥାନ୍ତି, ଅଥଚ କାହାରି ସାଙ୍ଗରେ ଦେଖା କରିବାକୁ ସେମାନଙ୍କର ଇଚ୍ଛା ନ ଥାଏ, ଯେଉଁ କାଠରେ "ନାହିଁ" ଲେଖା ହୋଇଥାଏ, ତାକୁ ସେ ବାକ୍ସର ଖୋପରେ ପୁରାଇ ଦିଅନ୍ତି । ଲୋକ ଦେଖନ୍ତି, ବାକ୍ସ ଉପରେ ଲେଖା ହୋଇଛି "ମିଷ୍ଟର ଅମୁକ ନାହାନ୍ତି ।" ମୁଁ ମନେ କରୁଛି ଆମର ବି ସେହିପରି କିଛି ଗୋଟାଏ କରିବା ଦରକାର । ତୁମେ କାଲି କନା ଉପରେ ନାଲିଆ ସୂତା ଦେଇ ଛୋଟ ଛୋଟ ଅକ୍ଷରରେ "ମୁଁ ଅଛି," "ମୁଁ ନାହିଁ", ଏହି ଦୁଇ କଥାକୁ ଲେଖି ତ । ଦୁଇଟା "ମୁଁ ଅଛି" ଓ ଦୁଇଟା "ମୁଁ ନାହିଁ" ଲେଖିବ । ସେଥିରୁ ଗୋଟାଏ "ମୁଁ ଅଛି" ଓ ଗୋଟାଏ "ମୁଁ ନାହିଁ" ମୁଁ ପାଖରେ ରଖିବି; ଆଉ ହଳକ ତୁମେ ରଖିବ । ଯେତେବେଳେ ମୋ ମନ ବିଗିଡ଼ି ଯାଇଥିବ, ମୁଁ କଣ କରିବି ନା ଗୋଟାଏ ସେଫଟିପୀନ୍ ଦେଇ "ମୁଁ ନାହିଁ"କୁ ମୋ ଗେଞ୍ଜିରେ ମାରିଦେବି । ତାକୁ ଦେଖି ତୁମେ ମୋ ମନର ଅବସ୍ଥା ବୁଝିପାରିବ । ମୁଁ ଯେମିତି ନାହିଁ, ଏହିପରି କାରବାର କରିବ, ମୋ ସାଙ୍ଗରେ ଆଉ ପାଟି ଫିଟେଇବ ନାହିଁ । ତୁମ ମନ ବି ଯେତେବେଳେ ଭଲ ନ ଥିବ, ତୁମେ ବି ସେମିତି କରିବ । ତୁମର 'ମୁଁ ଅଛି' ନ ଦେଖିବା ପର୍ଯ୍ୟନ୍ତ ମୁଁ ଆଉ ତୁମ ସାଙ୍ଗରେ କଥା କହିବି ନାହିଁ । ଏ କଥାଟା ନମ ମନକୁ ଖୁବ୍ ପାଇଲା । ତହୁଁଆର ଦିନ ପ୍ରଫୁଲ୍ଲ କଲେଜରୁ ଫେରିଲା ବେଳକୁ ଦୁଇ ହଳ "ମୁଁ ଅଛି","ମୁଁ ନାହିଁ" ତିଆର ।

# ମୁଁ ଅଛି, ମୁଁ ନାହିଁ

ଦିନେ ସଞ୍ଜବେଳେ ଅନ୍ୟ ମଜା ଆସି ପହଞ୍ଚିଲେ । ଏ ବୃଦ୍ଧ ପ୍ରାୟ ଏ ପିଲାଙ୍କ ନିକଟକୁ ଆସନ୍ତି । ଦୂର ସମ୍ପର୍କରେ ସେମାନଙ୍କର ଅଜା ହୁଅନ୍ତି । ଅଜାଙ୍କୁ ଦେଖି ନାତି ନାତୁଣୀ ବୋହୂ ଭାରି ଗର୍ବରେ ଏହି ଉଦ୍ଭାବିତ ଉପାୟର କଥା କହିଲେ; କିନ୍ତୁ ଦେଖାଗଲା ଯେପରି ଏ କଥା ବୁଢା ମନକୁ ପାଇଲା ନାହିଁ । ସେ ସେମାନଙ୍କୁ ପିଲାଦିନରୁ ଜାଣନ୍ତି । ସେତେବେଳଠୁ ସେ ସେମାନଙ୍କୁ ସ୍ନେହ କରୁଥିଲେ । ସେ ବେଶ୍ ସାଧାସିଧା, କୌତୁକପ୍ରିୟ, ବିଶ୍ୱସ୍ତ, କାହାରି କଥାରେ ନାହିଁ କହିବାବାଲା ଲୋକ ନୁହନ୍ତି । ଏମାନଙ୍କର ଏ କଥା ଶୁଣି ବୁଢା କିଛି ବେଳ ଗଲା ଖୋଲି ହସିଲେ, ଆଉ କହିଲେ, "ହଁ, ଏ ଉପାୟରେ କିଛି ବିଶେଷତ୍ୱ ଅଛି; କିନ୍ତୁ ଅସଲ କାମବେଳେ ଏହା କେତେ ଦୂର ଫଳ ଦେବ, ସେ ବିଷୟରେ ମୋର ଯଥେଷ୍ଟ ସନ୍ଦେହ ।"

ପ୍ରଫୁଲ୍ଲ କହିଲା, "ଆରେ ଯା ହୋ ସନ୍ଦେହ କଲାବାଲା, ମିଜାସ ଥଣ୍ଡା ରଖିବାର ଏ ପ୍ରକାର ଉପାୟ ଉଦ୍ଭାବନର କଥା କେବେ ଶୁଣିଛ ନା ଦେଖିଛ ?"

ଅଜା କହିଲେ, "ଏ ନବରଙ୍ଗ ବାବା ମୁଁ ଆଜି ପର୍ଯ୍ୟନ୍ତ ଦେଖି ନ ଥିଲି । ହଉ, ହଉ, ଆମେ ଅଦିବାସୀତ ଓଥସ ଲୋକ, ତୁମ ବିବାହିତଙ୍କର ରସ ସ୍ୱାଦ ଭାବ କେମିତି ବୁଝିବା ? ଅଚ୍ଛା, ମିଜାସଟାକୁ ଦମନ କରି ଆୟତ୍ତରେ ରଖିଲେ ତ ସବୁ ଆପଦ ଶେଷ ।"

ପ୍ରଫୁଲ୍ଲ—ମିଜାସକୁ ଦମନ କରିବା ପାଇଁ ତ ଏ ଉପାୟ ବାହାର କରାହୋଇଛି ।

ଅଜା—ତା ଜାଣେ; କିନ୍ତୁ—

ପ୍ରଫୁଲ୍ଲ—ଏ ସବୁ ବିଷୟରେ ତୁମେ କିଛି ଜାଣନା ହେ ।

"ତା ଆଉ କୋଉଠୁ ଜାଣିବି" କହି ଅଜା ନୀରବ ହେଲେ ।

ଯାହା ହେଉ, ଅନ୍ୟ କେହି ସନ୍ତୁଷ୍ଟ ହୁଅନ୍ତୁ ନ ହୁଅନ୍ତୁ ସ୍ୱାମୀ ଓ ସ୍ତ୍ରୀ ଏ ପ୍ରକାର ବନ୍ଦୋବସ୍ତରେ ସନ୍ତୁଷ୍ଟ ଥିଲେ । ଏହି ଉପାୟ ଅବଲମ୍ବନ କରିବାର ସୁଯୋଗ ପାଇବା ପାଇଁ ବେଶିଦିନ ଅପେକ୍ଷା କରିବାକୁ ପଡ଼ି ନ ଥିଲା । ଥରେ ଥରେ ପ୍ରଫୁଲ୍ଲ ଯେତେବେଳେ ସାହିତ୍ୟ ସେବାରେ ପ୍ରଗାଢ଼ ଅଧ୍ୟବସାୟ ସହକାରେ ମଧ୍ୟରାତ୍ରିର ତୈଳ ନିଃଶେଷ କରେ ଏବଂ ତାହା ସହିତ ଯେଉଁ ତୈଳ ସ୍ୱଚ୍ଛ-ବକୁ ରୁକ୍ଷ ହେବାକୁ ଦିଏ ନାହିଁ, ତାକୁ ମଧ୍ୟ ନିଃଶେଷ କରେ, ତା ପର ଦିନ ସକାଳେ ଜଳଖିଆ କରିବାକୁ ଆସିଲାବେଳକୁ ସ୍ତ୍ରୀ ଦେଖେ, ପ୍ରଫୁଲ୍ଲ "ମୁଁ ନାହିଁ" ବକ୍ଷରେ ଧାରଣ କରିଛି । ସେତେବେଳେ କାଣି କଉଡ଼ି ଚୁପ୍‌ଚୁପ । କିନ୍ତୁ କଥା କହିବ ନାହିଁ ବୋଲି ଯେ ସ୍ତ୍ରୀ ମୁରକି ହସିବ ନାହିଁ, ଏପରି କୌଣସି କଥା ନାହିଁ । ତା କିନ୍ତୁ ଅଧୋବଦନ ପ୍ରଫୁଲ୍ଲର ନଜରରେ ପଡ଼େ ନାହିଁ । ଏହିପରି ସମୟରେ ଯଦି ଗିଲାସରେ ପିଇବା ପାଣି ଦେବାକୁ ସ୍ତ୍ରୀ ଭୁଲିଯାଇଥାଏ, ତାହା-ହେଲେ ଅଗତ୍ୟା ବାଧ୍ୟ ହୋଇ ବାବୁଙ୍କୁ ଉଠିଯାଇ ସୁରାଇର ଗଳାପୀଡ଼ନ କରି ଜଳ ବାହାର କରିବାକୁ ହୁଏ । ଅବଶ୍ୟ ଏ ଅଭିନୟର ଯବନିକା ପତନ ହାସ୍ୟମୟୀ ସ୍ତ୍ରୀର ନୀରବରେ ଦେଖିବାକୁ ସାହସ ହୁଏ ନାହିଁ, ତା ପୂର୍ବରୁ ରଙ୍ଗମଞ୍ଚରୁ ତାର ପ୍ରସ୍ଥାନ ଘଟିଥାଏ । ଅନେକ ସମୟରେ ବ୍ୟାପାର ଗୁରୁତର ହେବା ପୂର୍ବରୁ "ମୁଁ ଅଛି" ନିଜର ଅସ୍ତିତ୍ୱ ଜ୍ଞାପନ କରେ । ଭାଗ୍ୟଚକ୍ର ସ୍ତ୍ରୀକୁ ମଧ୍ୟ ସମୟ ସମୟରେ ଏ ପ୍ରକାର ଅବସ୍ଥାରେ ଉପସ୍ଥିତ କରାଏ । ଯେତେବେଳେ ସମୟ ଗଡ଼ିଗଲାଣି ଅଥଚ ରନ୍ଧାବଢ଼ା ଶେଷ ହୋଇନାହିଁ, ଅନେକ ଦିନରୁ ସିଲାଇ କାମ ବାକି ପଡ଼ିଛି, ଗୃହକାର୍ଯ୍ୟର ସମସ୍ତ ଜଞ୍ଜାଳ ପରିଷ୍କାର କରୁ କରୁ ଶରୀର ଗଳଦ୍‌ଘର୍ମ ଓ ପ୍ରାଣ ଓଷ୍ଠାଗତ ହୋଇ ଲୁହେ, 'ଏ ମଣିଷର ଘରକାମ କରୁ କରୁ ପ୍ରାଣଗଲା,' ଆଉ ଏହି ସମୟରେ ଯେତେବେଳେ ବିବାହ-ଜୀବନର ପ୍ରତିକ୍ରିୟା ଆରମ୍ଭ ହୋଇ ଦୋଷଶୂନ୍ୟ ଯଥେଚ୍ଛା ଆମୋଦପ୍ରମୋଦ ପ୍ରଭୃତି ଅନୂଢ଼ା ଅବସ୍ଥାର ଯାବତୀୟ ଅତୀତକୁ ସ୍ମରଣ କରାଉଥାଏ, ସେତେବେଳେ ଯଦି କଚେରି-ପ୍ରତ୍ୟାଗତ ସ୍ୱାମୀର ପଦଶବ୍ଦ ଦୁଆର ମୁହଁରୁ ଶୁଭେ, ସ୍ତ୍ରୀର ବକ୍ଷ 'ମୁଁ ନାହିଁ' ଧାରଣ କରିବାକୁ ବିଳମ୍ବ କରେ ନାହିଁ । ଦୁର୍ଭାଗ୍ୟବଶତଃ ଯଦି

# ମୁଁ ଅଛି, ମୁଁ ନାହିଁ

ସେଦିନ ସ୍ୱାମୀର କଚେରୀର ଅଭିଜ୍ଞତା ମଧୁର ହୋଇ ନ ଥାଏ, ସ୍ତ୍ରୀର "ମୁଁ-ନାହିଁ" କୁ ଦେଖି ସ୍ୱାମୀର 'ମୁଁ ନାହିଁ' ମଧ୍ୟ ବାହାରି ଆସେ । ତେଣିକି ଦୁହିଁକା ଦୁହେଁ ଚୁପଚାପ୍ । "ମୁଁ ଅଛି" ବାହାରିବା ପର୍ଯ୍ୟନ୍ତ ନିଜ କାମ ନିଜେ କରନ୍ତି । ସେଦିନର ମାନଭଞ୍ଜନର ଲଢେଇପାଇଁ ଏହିପରି ଗାନବାଜଣା ବିନା ବଡ଼ ନୀରସରେ ଶେଷ ହୁଏ ।

ସେଦିନ ସେମାନେ ଏହି 'ମୁଁ ଅଛି', 'ମୁଁ ନାହିଁ' ଅଭିନୟର ଠିକ୍ ମଝି ଅଙ୍କରେ ପହଞ୍ଚିଥିଲେ, କି କେଉଁଦିନ ସଞ୍ଜବେଳେ ଅଜାଙ୍କର ଭାଗ୍ୟଟା ମନ୍ଦ ଥିଲା, ତା ଅନ୍ତର୍ଯ୍ୟାମୀ ଜାଣନ୍ତି । ବୁଢ଼ା ଦିନା କେତେ ନିର୍ମଳା ଆଉ ପ୍ରଫୁଲ୍ଲକୁ ଦେଖିବାକୁ ଆସି ନ ଥିଲେ । ସେଦିନ ସଞ୍ଜବେଳେ ଅଜା ତାଙ୍କ ଘରେ ପହଞ୍ଚି ଦେଖିଲେ, ଦୁଇଜଣଯାକ "ମୁଁ ଅଛି" ଅବସ୍ଥାରେ । ଖଙ୍କାରି କହିଲେ, "କିହୋ, ଅଛ କେମିତି ?"

ପ୍ରଫୁଲ୍ଲ କହିଲା, "ହୁଁ ।"

ନିର୍ମଳା କହିଲା, "ଆରେ ଅଜା, ଆସ ଆସ, ଥଣ୍ଡା ପବନ ବୋହିଲାଣି, ବର୍ଷା ପଡ଼ିବ, କବାଟ ଆଉଜାଇ ଭିତରକୁ ଆସ । ତୁମ ନାତି କଥା ଆଉ ପଚାରୁଛ କାହିଁକି ? ସେ କଣ ଆଉ ତାଙ୍କଠି ଅଛନ୍ତି ? ଦିନ ଆଉ ରାତି, ରାତି ଆଉ ଦିନ, କଲମ ଘେଞ୍ଚି ଘେଞ୍ଚି ତାଙ୍କ ହାତରେ ବଣ୍ଡି ପଡ଼ିଗଲାଣି ।"

ପ୍ରଫୁଲ୍ଲ କହିଲା, "ମୋ ନିଜ ସମ୍ବନ୍ଧରେ ଯାହା ଇଚ୍ଛା ତାହା କହିପାର, ମୋ କାର୍ଯ୍ୟ ସମ୍ବନ୍ଧରେ ତୁମ ପାଖରୁ କୌଣସି କଥା ଶୁଣିବାକୁ ମୋତେ ଭଲ ଲାଗେ ନାହିଁ । ମନେ ରଖିବ, ଏହି କଲମଘେଞ୍ଚା ହେତୁରୁ ତୁମର ଗୁଜରାନ୍ ଚଳୁଛି ।"

ନିର୍ମଳା ଟିକେ ଗଳା ନରମ କରି କହିଲା, "ହାତ ଧରି ଯେତେବେଳେ ବା' ହୋଇଛ, ଗୁଜରାନ୍ କଣ ଚଳାନ୍ତ ନାହିଁକି—ସେ କଲମ ଘେଞ୍ଚି ଚଳାଅ,

ଆଉ ଯାହା କର ଚଳାଅ । ଆଚ୍ଛା, ତୁମ ସକାଶୁ ଲୋକ କଣ ଟିକେ ହସିବ କି ନାହିଁ ? କଲମ ଦିନସାରା ଚାଲିଉଛି, ରହସ୍ୟ ବୁଝୁନା ।”

ପ୍ରଫୁଲ୍ଲ ଅଜାଙ୍କ ଆଡ଼କୁ ମୁହଁ କରି କହିଲା, “ମୁଁ ଆଜିକାଲି ସ୍ୱତରେ ବେଶି ଲେଖାଲେଖି କରେ ନାହିଁ, ଦିନରେ ତ ନ କରି ଉପାୟ ନାହିଁ ।”

ଅଜା ବଡସ୍ ବଢ଼ ବଦ୍ଧାଟରେ ପଡିଲେ । ଉଭୟଙ୍କୁ ଶାନ୍ତ କରିବାକୁ କହିଲେ, “ଲେଖାପଢା ବଡ ଭଲ କାମ, ସଂସ୍କୃତରେ ଅଛି—

ସଂସାରବିଷବୃକ୍ଷସ୍ୟ ଦ୍ୱେ ଏବ ମଧୁରେ ଫଳେ

କାବ୍ୟାମୃତରସାସ୍ୱାଦଃ ସଙ୍ଗମଃ ସଜ୍ଜନୈଃ ସହ ।”

ନିର୍ମଳା କହିଲା, “ଅଜା, ତୁମ ନାତିଙ୍କର ବୃକ୍ଷରେ କେବଳ ପ୍ରଥମ ଫଳଟି ଫଳେ; ଘରେ ଯେଉଁ ଦ୍ୱିତୀୟ ସଜ୍ଜନଟି ଅଛନ୍ତି, ତାଙ୍କ ସଙ୍ଗସୁଖ ମଧୁର ଲାଗେ ନାହିଁ ।”

ଏତିକି ଶୁଣି ପ୍ରଫୁଲ୍ଲ ତଡ଼ବଡ଼ ଉଠିପଡି କହିଲା, “ଅଜା, କିଛି ମନେ କରିବ ନାହିଁ, ମୁଁ ବର୍ତ୍ତମାନ ଘରେ ରହିପାରୁ ନାହିଁ ।”

ବିସ୍ମୟରେ ଅଜାଙ୍କ ଚକ୍ଷୁ ବିସ୍ଫାରିତ ହୋଇଗଲା । ସେ କହିଲେ, “ଏ ଝଡ଼ବୃଷ୍ଟି, ଏ ଦୁର୍ଯୋଗରେ ତୁମେ ଯିବ କୁଆଡ଼େ ହେ ? ଆରେ ରକ୍ଷାକର ! କାରଣ ଦେଖିଲେ “ମୁଁ ନାହିଁ” ପ୍ରଫୁଲ୍ଲ ବକ୍ଷରେ ଶୋଭା ପାଉଛି । ପ୍ରଫୁଲ୍ଲର କଥା ଶୁଣି ସେ ପ୍ରଥମରେ ମନେକରିଥିଲେ ପ୍ରଫୁଲ୍ଲ ଅବା ସତକୁ ସତ କୁଆଡ଼େ ଯାଉଛି; କିନ୍ତୁ ପରେ ବୁଝିପାରିଲେ, ସେ କେବଳ କଥାରେ “ମୁଁ ନାହିଁ” । ଦେଖିଲେ ଅବସ୍ଥା ସୁବିଧାଜନକ ନୁହେଁ, ଧୀରେ ଧୀରେ ଖସିଯିବାର ଶ୍ରେୟଃ । ଉଠି କହିଲେ, “ମୁ ଯାଉଛି, ନମ !”

ନିର୍ମଳା କହିଲା, “ନା, ନା, ସେ କି କଥା, ଅବ ନକେ କହୁଥିଲେ ଝଡ଼ ବୃଷ୍ଟି କଥା, ଜକେ ପୁଣି ଯିବ କେମିତି ?”

ଅଜା—ଏଇଟ୍ ଏତିକି ଯେ, ମୁଁ ଯାଉଛି, ଛଡା ଅଛି ।

# ମୁଁ ଅଛି, ମୁଁ ନାହିଁ

ନା, ନା, କହି ନିର୍ମଳା ଆସି ତାଙ୍କୁ ବସାଇ ଦେଲା । ତା ପରେ କହିଲା, "ଆଜି ତୁମେ ଏଠି ଖାଇବ । ତୁମ ନାତି ତ ନାହାନ୍ତି, ତୁମେ ମତେ ଏକୁଟିଆ ଛାଡି ଯିବ କେମିତି ?"

ଅଜା ବୁଡା ପାଟି ଝାଳୁଡାକୁ କର ମୁଣ୍ଡ ବୁଲେଇ ପଛଆଡେ ଯେଉଁଠି ପ୍ରଫୁଲ୍ଲ ଗୁମ୍ ହୋଇ ବସିଥିଲା, ସେ ଆଡକୁ ଅନାଇଲେ । ତା ଉତ୍ତାରୁ କହିଲେ, "ମୋ ପାନଡବାଟା ଛାଡି ଆସିଛି ।"

ନିର୍ମଳା—ସେଥିପାଇଁ କଛି ଚିନ୍ତା ନାହିଁ । ତୁମ ନାତି ତାଙ୍କ ପାନଡବା ନେବାକୁ ଭୁଲି ଯାଇଛନ୍ତି ।

ଏହା କହି ନିର୍ମଳା ପ୍ରଫୁଲ୍ଲର ପାନଡବା ଆଣି ପିଠାଇ ତାଙ୍କ ସମ୍ମୁଖରେ ଧରିଲା ।

ଅଜା ପଛପଟକୁ ଅନାଇ ପ୍ରଫୁଲ୍ଲର ଅମ୍ବିଲା ମୁହଁକୁ ଟିକେ ଦେଖିନେଇ କହିଲେ, "ନାହିଁ ରେ ବାବୁ, ତାପାଇଁ ଯେଉଁ ପାନ ଭଙ୍ଗା ହୋଇଛି, ମୁଁ କାହିଁକି ସେଥିରେ ଭାଗ ବସାଇବ ? ତୁ ମତେ ଅଲଗା ପାନ ଭଙ୍ଗିଦେ ।"

ନିର୍ମଳା ଟିକେ ପ୍ରଫୁଲ୍ଲ ଆଡକୁ ଅନାଇ ଦେଇ କହିଲା, "ତୁମ ନାତି କଣ ଅଛନ୍ତି ଯେ ସେ ଖାଇବେ ? ଏ ପାନ କଣ ଶୁଖିବ ? ସେ ଥିଲେ ବ କଣ ତାଙ୍କ ଡବାରୁ ତୁମକୁ ପାନ ଦେଇ ନ ଥାନ୍ତେ ?"

ପାନ ଖାଇଲା ବେଳେ କେତେ ଲୋକ ପାନକୁ ପାଟିରେ ପୁରାଇ ଅଧା ବାହାରେ ରଖି ତା ଅଗଟିକ ଛିଣ୍ଡାଇ ପକାଇ ଦିଅନ୍ତି । ଅଜାଙ୍କର ମଧ ସେ ଅଭ୍ୟାସ ଥିଲା । ଡବାରୁ ପାନ ନେଇ ପାଟିରେ ପୁରାଇ ଅଗ ଛିଣ୍ଡାଇବାକୁ ଯାଉଛନ୍ତି, ଏହିପରି ସମୟରେ ନିର୍ମଳା ଦଉଡି ଆସି କହିଲା, "ରୁହ, ରୁହ ।" ତା ପରେ ନିଜ ହାତରେ ଅଜାଙ୍କ ମୁହଁରୁ ବାହାରିଥିବା ପାନର ଅଗ ଛିଣ୍ଡାଇ ଦେଲା ।

## ସାମଗ୍ରୀ ୬

ଅଜା କହୁଲେ,"ହରେ ବାବା,ଅଜ ଏ ଗରିବ ଉପରେ ଏତେ ଅନୁଗ୍ରହ କାହିଁକି ?"

ନିର୍ମଳା ଦଉଡ଼ ଯାଇ ପ୍ରଫୁଲ୍ଲର କୋଟ ପକେଟରୁ ଗୋଟାଏ ସିଗାରେଟ ବାକ୍‌ସ ବାହାର କର ଆଣି, "ଅଜା ତୁମେ ପିକା ଖାଅ, ଆଜ ଏ ସିଗାରେଟ ଖାଇବାକୁ ହେବ" କହ୍, ଅଜା ଉତ୍ତର ଦେବା ପୂର୍ବରୁ ତାଙ୍କ ମୁହଁରେ ଗୋଞ୍ଜି-ଦେଇ ଦିଆସିଲିଇ ଜଳାଇ ସିଗାରେଟରେ ଲଗାଇଦେଲ୍ଲ ।

ଅଜା ପାଟିରୁ ସିଗାରେଟ କାଢି କହୁଲେ, "ଏ ସବୁର ମାନେ କଣ ?"

ନିର୍ମଳା କହୁଲ୍,"ଥରେ ଭାଇ ଏଠିକି ଆସିଥିଲେ । ମୁଁ ତାଙ୍କ ସିଗାରେଟ ରେ ଏପରି ଲଗାଇ ଦେଇଥିଲି ବୋଲି ତୁମ ନାତି ମୋତେ କଣ କହୁଥିଲେ ଜାଣ ? ସେ କହୁଲେ, ମୁଁ ଭାଇ ଫାଇ ଜାଣେ ନାହିଁ, ମୋ ସିଗାରେଟ ଛଡ଼ା ଆଉ କାହା ସିଗାରେଟ ସେମିତି ଲଗାଇଦେଲେ ମୁଁ ତୁମ ସାଙ୍ଗରେ କଳିଆ କରିବି । ତୁମ ନାତି ନାହାନ୍ତି, ନୋହୁଲେ ଏ କଥା ଦେଖିଥିଲେ ଆଜ ଆଉ ମୋର ବାକି ରଖି ନ ଥାନ୍ତେ ।

ଅଜା କହୁଲେ, "କଅଣ କହୁଛୁ ?"

ନିର୍ମଳା କହୁଲ୍,"ଆଉ ଗୋଟାଏ କଥା ଶୁଣିବ ଅଜା ? କଥାକୁ ବୁଝିଥାଅ । ତୁମ ନାତି ନାହାନ୍ତି ସତ; କିନ୍ତୁ କେତେବେଳେ ହଠାତ୍ ଆସି ପହଞ୍ଚିଯିବେ । ଅଜା ବାଧା ଦେଇ କହୁଲେ, "ନାହିଁରେ ବାବା, ଆଜ ଗୋଟିକ ପାଇଁ ଯଥେଷ୍ଟ କଥା ଶୁଣିଲିଣି । ହଜମ କରି ପାରିବ ନାହିଁ ।"

ନିର୍ମଳା—ଅଚ୍ଛା, ତେବେ ଆଉ ଗୋଟାଏ କଥା ଶୁଣ । ତୁମ ନାତି କେମିତି ସାହିତ୍ୟସେବା କରନ୍ତି, ତୁମେ ଜାଣି ନାହିଁ । ସେ କଣ ସାହିତ୍ୟ ସେବା ? ସବୁମତେ ସରସ୍ୱତୀ ସାଙ୍ଗରେ ଧସ୍ତାଧସ୍ତି । ବିଶେଷତଃ ଅମିତ୍ରାକ୍ଷର ଛନ୍ଦରେ କୌଣସି ବୀରରସପୂର୍ଣ୍ଣ କବିତା ଲେଖିବାର ଯେତେବେଳେ ଚେଷ୍ଟା ହେଉଥାଏ, କଣ କରନ୍ତି ନା, ଚାରିପାଞ୍ଚ ଧାଡ଼ି ଲେଖିଦେଇ, ଗୋଟାଏ କଣକୁ

# ମୁଁ ଅଛି, ମୁଁ ନାହିଁ

ଯାଇ, ଗୋଡ଼ ଫରକଣ୍ଠ କରି ଛିଡ଼ା ହୋଇ, ଗୋଟାଏ ବାଇଶିପଲିଆ ବଧା ଉଞ୍ଚାଇ, ଆଖି ବାହାର କରି............

ପ୍ରଫୁଲ୍ଲ ବସି ପିକା ଖାଉଥିଲା । ଦେଖିଲା, ଆଉ ରକ୍ଷା ନାହିଁ, ସବୁ କଥା ପଦାକୁ ବାହାରି ପଡ଼ିବ । ଚଞ୍ଚଳ ଧାଡ଼ୁକିନା ଚଉକି ଛାଡ଼ି କହିଲା, 'ମୁଁ ଅଛି ।'

ଅଜା ନାତୁଣୀ-ବୋହୂ ପଛକୁ ଅନାଇ ପ୍ରଫୁଲ୍ଲ ଛାଟିରେ ଦେଖିଲେ 'ମୁଁ ଅଛି' ।

ନିର୍ମଳା କହିଲା, "ବାଃ ବଡ଼ ଚଞ୍ଚଳ ଫେରି ଆସିଲ ତ !" ସେତେବେଳେ ମଧ୍ୟ ବ୍ୟଙ୍ଗକୌତୁକରେ ତାର ଆଖି ହସୁଛି ।

ପ୍ରଫୁଲ୍ଲ ପଚାରିଲା, "ଖାଇବାର କଣ ବନ୍ଦୋବସ୍ତ କରୁଛ ?"

ନିର୍ମଳା—ତୁମ ସୁଜଗିନ୍ କଥା ତୁମେ ବୁଝ । ଅଜା ଥାଉଁ ଥାଉ ଯେବେ ତୁମେ 'ମୁଁ ନାହିଁ' କାଟିପାର, ମୁଁ କଣ କାଟିପାରେ ନାହିଁ ?

ତା ଉତ୍ତାରୁ ନିର୍ମଳା ଯାଇ ଚଉକିରେ ଆଉଜି ପଡ଼ିଲା । ପ୍ରଫୁଲ୍ଲ ଆଉ ଅଜା ଦେଖିଲେ ନିର୍ମଳାର 'ମୁଁ ନାହିଁ' ଲାଲ୍ ପତାକା ତୋଳି ବିପଦର ସୂଚନା କରୁଛି ।

ପ୍ରଫୁଲ୍ଲ ଟିକେ ଗେଷ୍ଟ ହୋଇ ବସି କହିଲା, "ଅଚ୍ଛା ଭାତ ତରକାରୀ ବାଢ଼ିକରି ଖାଇବାକୁ ହେବ, ଏଇ ତ ?"

ଅଜା ଉଠି କହିଲେ, "ମୁଁ ଯାଉଛି ।"

"ଖବରଦାର ଅଜା, ରହିବାକୁ ତମକୁ ନିମନ୍ତ୍ରଣ କରା ହୋଇଛି, ମୁଁ ନ ଖୁଆଇ ଛାଡ଼ିବି ନାହିଁ । ତୁମେ ଏଠି ଖାଇବା ପାଇଁ ଏ ଆସନଟା ପକାଇ ଜାଗା କର, ମୁଁ ରନ୍ଧାଘରୁ ଖାଇବାର ନେଇ ଅସୁଛି ।" ଏହା କହି ପ୍ରଫୁଲ୍ଲ ରନ୍ଧାଘରଆଡ଼କୁ ଉଠିଗଲା ।

# ସାମୟିକ

ରନ୍ଧାଘରୁ ଅବାଜ ଆସିଲା, "ଏ ଘରେ କଣ କଛି ସୁନିୟମ ସୁବିଧା ଅଛି ? କୋଉଟି କୋଉ ଜିନିଷ ଯେ ଅଛି, ତାର ଠିକଣା ନାହିଁ ।" ମଣିଷ ଗଳାର ଅବାଜ ଶେଷ ହେଉଣୁ ନ ହେଉଣୁ ଥାଳକଂସା ପଡିବାର ଅବାଜ ଶୁଭିଲା ।

ଅଜା ବସି ବସି ପ୍ରମାଦ ଗଣିଲେ । କେବଳ ମୁହଁରେ କହିଲେ, "ବାଟରୁ ଅଜ ଗୋଡ଼ ହାତ ନ ଛେଚିଲେ ରକ୍ଷା ।"

ଅଳ୍ପ ସମୟ ପରେ ଥାଳୀ ସଜାଇ ପ୍ରଫୁଲ୍ଲ ଆଣି ଖାଇବା ଜାଗାରେ ରଖି କହିଲା, "ଅଜା, ଅଜ, ଆମର ଖେଳଘର ଭୁତ ! ନିଜେ ଯଦିବା ନ ରାନ୍ଧିଛୁ, ତଥାପି ନିଜେ ବାଢି, ନିଜେ ଖାଇବା । ଦୁଃଖର କଥା, ଆମେ ନିଜେ ଯା ରାନ୍ଧି ପାରିଲୁ ନାହିଁ; ତାଠୁଁ ଦୁଃଖର କଥା, ରାନ୍ଧିଲାବାଲା ଯାଙ୍କରେ ଖାଇବାକୁ ଘରେ ନାହିଁ ।"

ଅଜା ନାହିଁ କରୁ କରୁ ତ ତାଙ୍କୁ ଖାଇବା ଜାଗାରେ ବସାଇଲା । କିନ୍ତୁ ଯେତେବେଳେ ଖାଇବା ଜିନିଷ ନେଇ ଅଜାଙ୍କ ଥାଳୀରେ ପର୍ବତ ପ୍ରମାଣେ ଗଦାଇଲା, ଆଉ ଅଜା ଦୁଇଜଣଙ୍କ ଥାଳୀରେ ଥିବା ଖାଇବା ପଦାର୍ଥର ପରିମାଣ ଦେଖି ଜାଣିପାରିଲେ ଯେ, ନିର୍ମଳା ପାଇଁ ବେଶି କିଛି ନାହିଁ, କହିଲେ, "ରେ ଓଲୁ, କାଢି ରଖ ଅଧେ ନିମ ପାଇଁ ।"

ପ୍ରଫୁଲ୍ଲ କହିଲା, କେହୁ ଯେବେ ଭୋକିଲା ଥାଏ, ତା ପାଇଁ ଆମେ ପ୍ରସାଦ ଛାଡିଯିବା ।"

ଅଜାଙ୍କ ପଛଆଡୁ ଚଉକି ଧଡ଼୍ ଧଡ଼୍ ହେଲା । ଅଜା ଫେରି ଦେଖନ୍ତି, ନିର୍ମଳାର 'ମୁଁ ନାହିଁ' ଜାଗାରେ 'ମୁଁ ଅଛି ।'

ନିର୍ମଳା ଉଠି କହିଲା, "ମୋ ଗୁଜରାନ୍ ଚଳାଇବା ପାଇଁ ମୁଁ କାହାରି ପ୍ରସାଦର ଅପେକ୍ଷା କରେ ନାହିଁ ।"

ପ୍ରଫୁଲ୍ଲ କହିଲା, 'ଆଜପର୍ଯ୍ୟନ୍ତ ତ ଗୁଜରାନ୍ ଏହାରି ପ୍ରସାଦରେ ଚଳୁଥିଲା । ରାଗରେ ଦୁଇଜଣଙ୍କର ମୁହଁ ଲାଲ । ଅଜା କଣ କହିବାକୁ ଯାଉଥିଲେ, କଥା

# ମୁଁ ଅଛି, ମୁଁ ନାହିଁ

ମୁହଁରେ ଅଠକିଗଲା । ଅନାଇ ଦେଖନ୍ତି ଯେ, ତୁହିଁକା ତୁହେଁ 'ମୁଁ ନାହିଁ' ହୋଇ ବସିଛନ୍ତି ।

ଏଥର ଥର ଅଜା ବଡ଼ ବିପଦରେ ପଡ଼ିଲେ । କଣ କରିବେ, କିଛି ବୁଝି-ପାରିଲେ ନାହିଁ । ଖିଚ ତରକାରୀ ଘୋଡ଼ାଇଦେଇ ଶେଷକୁ ଘରକୁ ଯିବାକୁ ସ୍ଥିର କଲେ । ଦୁଆର ମୁହଁକୁ ଉଠିଆସି କହିଲେ, "ଯେତେବେଳେ ଘରେ କେହି ନାହାନ୍ତି, ମୁଁ ଆଉ ରହିବ କାହିଁକି ?"

ଅଜା କିନ୍ତୁ ଗଲେ ନାହିଁ । ଦୁଆର ମୁହଁରୁ କଣ ଭାବିକି ଫେରି ଆସିଲେ । ଅଗ୍ରମ ଚଉକିରେ ବସି ହାତଗୋଡ଼ ଟେକିଦେଇ କହିଲେ, ଘରେ ତ କେହି ନାହାନ୍ତି; ମୁଁ ବି ଯଦି ଚାଲିଯାଉଛି, ଚୋରଫୋର ଆସି ପଶିବେ । ଦୁଃଖର କଥା, ଏ ପ୍ରକାର ଏକ ଉପାୟ ବାହାର କରିଛନ୍ତି ଯେ, ତୁହିଁକା ତୁହେଁ ଥାଉଁ ଥାଉଁ ଅନ୍ତର୍ଦ୍ଧାନ ହେଉଛନ୍ତି । ଅଜା ପକେଟରୁ ଗୋଟାଏ ପିକା କାଢ଼ି ଖାଇବାକୁ ଲାଗିଲେ । କିଛିକ୍ଷଣ ଖାଇବା ପରେ କହିଲେ, "ମୁଁ ପିଲାଟିଦିନୁ ଏମାନଙ୍କୁ ଦେଖିଛି । ଆଶ୍ଚର୍ଯ୍ୟର କଥା ଏହି ଯେ, ଏମାନେ ପରସ୍ପରକୁ କେମିତି ଭଲ ପାଆନ୍ତି, ଯେ କଥା ଏମାନେ ଭୁଲି ଯାଉଛନ୍ତି । ଅବଶ୍ୟ ଏମାନେ ଏଠି ଥିଲେ ମୁଁ ଏ ସବୁ କଥା କହନ୍ତି ନାହିଁ; କାରଣ ଲୋକ ଆଗରେ ତାର ଗୁଣ ଗାଇବା ଭଲ ନୁହେଁ । ଯେତେବେଳେ ଏମାନଙ୍କର ପାନପାଟ ହୋଇ ଯାଇଛି । ତା ଉତ୍ତାରେ ପ୍ରଫୁଲ୍ଲ ଯେତେବେଳେ ଛମାସ ଜର ହେଲା, ନିର୍ମଳା ଯେ କେମିତି ପ୍ରତିଦିନ ମୋଠୁ ଖବର ପାଇବାକୁ ଅନାଇ ବସିଥାଏ, ଯେତେବେଳେ ତା ମୁହଁ ଯେ କେମିତି ଶୁଖି ଯାଇଥାଏ, ତାହା ତ ପ୍ରଫୁଲ୍ଲ ଦେଖି ନାହିଁ । ବିଶେଷରେ ମୁଁ ଯେତେବେଳେ ଯେଉଁ ସମୟରେ ଥଟ୍ଟା କରି କହେ, 'ନିମ୍, ପ୍ରଫୁଲ୍ଲର ଯଦି କିଛି ହୋଇଯାଏ, ଭାବନା କଣ, ଏ ବୁଢା ତ ଅଛି ।' ନିର୍ମଳା କେମିତି 'ଛି ଅଜା, ଏ ଥଟ୍ଟା ମୋତେ ଭଲ ଲାଗେ ନାହିଁ' କହି ମତେ ସତ ଚାହିଁପକାଏ । ପ୍ରଫୁଲ୍ଲ ବି କଣ କମକୁ କମ ଭଲପାଏ ! କିନ୍ତୁ ସ୍ତ୍ରୀ ଲୋକକୁ ତ ଆଉ କହିଦେବାକୁ ହେବ ନାହିଁ, ତୋ ସ୍ୱାମୀ ତୋତେ କେମିତି

ଭଲପାଏ, ତା ତୁ ଏ ପର୍ଯ୍ୟନ୍ତ ବୁଝି ନାହୁଁ । ଏ ଦୁଇଜଣ ଜାଣନ୍ତି ନାହିଁ, ମୁଁ ତାହାଙ୍କ ଏ ପର୍ଯ୍ୟନ୍ତ ଅବବାହିତ । ଏହି ସ୍ୱଗସ୍ୱଭାବ ଯେ ତାହାର କାରଣ, ଏହାଠୁ ସକାଶୁ ଯେ ମୁଁ ମୋର ମର୍ତ୍ତ୍ୟର ଦେବତାକୁ ହରାଇଥିଲି, ଏ କଥା ଏମାନେ ଜାଣିବେ କାହୁଁ ? ସେ କଥା ଯେ ମୁଁ ମୋ ନିଜକୁ ସ୍ମରଣ କରାଇବାକୁ ଚାହେଁ ନାହିଁ । ସେ ଆସି ତିରିଶ ବର୍ଷର କଥା । ଏହି ଧୈର୍ଯ୍ୟ ଶିଖିବା ପାଇଁ ମୋତେ ଯେ କେତେ ଆଘାତ, କେତେ ପ୍ରହାର ଭୋଗ କରିବାକୁ ହୋଇଛି, ତାହା ଜାଣିଲେ ଏମାନେ ଏପରି ଅଧୀର ହୁଅନ୍ତେ ନାହିଁ । ଏମାନେ ମନେ-କରୁଛନ୍ତି ବିବାହବନ୍ଧନ ବଡ଼ ଶକ୍ତ, ତାକୁ ଛିଣ୍ଡାଇବାକୁ ସାମାନ୍ୟ ଅଧୈର୍ଯ୍ୟର କ୍ଷମତା ନାହିଁ । କିନ୍ତୁ ଅଧୈର୍ଯ୍ୟକୁ ପ୍ରଶ୍ରୟ ଦେଲେ ଏହି ମିଳନ ତଳେ କି ଯେ ସର୍ବଗ୍ରାସୀ ଅମିଳନ ଅନୈକ୍ୟ ଏହାର ନିପାତ ନିମିତ୍ତ ଖାତ ଖୋଳିଥାଏ, ତାହା ଏମାନେ ଯେମନ୍ତ ଅତି ବିଳମ୍ବରେ ନ ବୁଝନ୍ତି, ଏହାହିଁ ମୋର ଈଶ୍ୱରଙ୍କ...''

ନିର୍ମଳା ଅନେକ କ୍ଷଣରୁ ନୀରବରେ କାନ୍ଦୁଥିଲା । ଆଉ ସମ୍ଭାଳି ନ ପାରି ଉଠିଆସି କହିଲା, "ଅଜା ମୁଁ ଭାରି ଦୋଷୀ ।" ପ୍ରଫୁଲ୍ଲ ଉଠିଆସି କହିଲା, "ନାହିଁ, ନାହିଁ, ସବୁ ଦୋଷ ମୋହରି ।"

ଅଜା କହିଲେ, "ଆସିବନି ତୁମେ ଦୁହେଁ; ସବୁ ଦୋଷଯାକ ଦେବା ନିଦ୍ଦ ତୁମ 'ମୁଁ ନାହିଁ' 'ମୁଁ ଅଛି' ଉପରେ । ତାକୁ ଚମ୍ବଲ କାଟ, ପୋତିଲେ ଯାଇ ତାର ଉଚିତ ଦଣ୍ଡ ହେବ ।".

---

# ସହକର୍ମିଣୀ

[ ଏକ ]

ନୁହେଁ ଧର୍ମପତ୍ନୀ ତବ, ନୁହଇ ସେ ଧାତ୍ରୀ,
ସେ ଯେ ଯୁଗଯାତ୍ରୀ,
ସାଥୀ ତବ ଜୀବନର ପଥେ,
ସଙ୍କୋଚର ମାୟାପାଶ କାଟିଦେଇ ଚଳେ ଅବିରତେ,
ଶଙ୍କାଶୂନ୍ୟ ଦୃଷ୍ଟି ତାର ଉଦାତ୍ତପ୍ରସାରୀ,
ନୁହେଁ ସେ ଗୃହିଣୀ ଜାୟା, ନର ତୁମ୍ଭେ, ସେ କେବଳ ନାରୀ ।

(କାଳନ୍ଦୀ ପାଣିଗ୍ରାହୀ)

ଓକିଲ କାଶୀନାଥ ଯେତେବେଳେ କଚେରୀର କାମ ସାରି ଘରକୁ ଫେରିଲା, ସେତେବେଳକୁ ତାର ପେଟର କ୍ଷୁଧା ମୁଣ୍ଡକୁ ଉଠିଲାଣି; କିନ୍ତୁ ମନ ଅତୃପ୍ତ ନୁହେଁ । କାରଣ ପକେଟ ଆଜି ପୁରିଛି, ଯଦିବା ପେଟ ଖାଲି ପଡ଼ି କଙ୍କାଳରେ ପରିଣତ ହୋଇଛି । କାଶୀନାଥ ଯେତେବେଳେ କଚେରୀରୁ ବାହାରି ଗାଡ଼ିରେ ବସିଲା ଘରକୁ ଯିବାକୁ, ହାତ ତାର ଅଜ୍ଞାତସାରରେ ଯାଇ ଡାହାଣ କଡ଼ ପକେଟର ଓଜନ କଷିବାକୁ ଆରମ୍ଭ କଲା ଏବଂ ମନ କଳ୍ପନା କରିବାକୁ ଲାଗିଲା, ଏହି ଓଜନର ଅନୁରୂପ ଅଭ୍ୟର୍ଥନା ଆଜି ଘରେ ପାଇବ କି ନାହିଁ ।

ଘରେ ଅଭ୍ୟର୍ଥନା ପାଇବା ବିଷୟରେ ସନ୍ଦେହ କରିବାର କାରଣ ଯେ ନ ଥିଲା, ତାହା ନୁହେଁ । ଆଜିକାଲି ରାତି ନଅଟା ଦଶଟା ପୂର୍ବରୁ କମଳାର ସାକ୍ଷାତ୍ ମିଳିବା ଦୁଷ୍କର । ଶାଶୁ ଶ୍ୱଶୁର ଦିଅର ଝିଅଙ୍କ କି ଅବା ଘରର ଅନ୍ୟାନ୍ୟ କାମଧନ୍ଦା ଯେ ଏ ସାକ୍ଷାତର ପ୍ରତିବନ୍ଧକ ହେଉଥିଲେ, ତାହା ନୁହେଁ । କି ଦିନ କି ରାତି କୌଣସି ସମୟରେ ସ୍ୱାମୀ ସ୍ତ୍ରୀର ଅବାଧ ମିଳନ

ପକ୍ଷରେ ଏ ସବୁ ଅନାବଶ୍ୟକୀୟ ଅବରୋଧ ଅନ୍ତତଃ କଠୋର ବାସରବନରେ ନ ଥିଲା, ଏପରି କି ପିଲାଙ୍କିଲାର କଙ୍କାଳ ମଧ୍ୟ ନ ଥିଲା । କାରଣ ଯଦିବା ସେମାନେ ପାଞ୍ଚ ଛଅ ବରଷ ହେଲା ବନ୍ଧୁ ହୋଇଛନ୍ତି, ଏଯାବତ୍ ସେମାନେ ନିଃସନ୍ତାନ । ତଥାପି ଗତ ଦଶନ୍ଧି ପୂର୍ବରୁ ଆଜିକାଲି ସ୍ତ୍ରୀର ସାକ୍ଷାତ୍ ମିଳିବା ଦୁଷ୍କର । ଧନ ଥିଲା, ଯେତେବେଳେ ଦୁଇଜଣକୁ ପରସ୍ପରର ସଙ୍ଗସୁଖ ଭୋଗ କରିବାରେ ଧନ ଗତି ଅଣ୍ଟୁ ନ ଥିଲା । ସେ ହେଉଛି ବାହା ହେବାର ପହିଲି କେତେ ମାସ । କମଳା ସେତେବେଳେ ପନ୍ଦର ବର୍ଷର ବାଳିକା; କିନ୍ତୁ ଏହି ଅତ୍ୟଧିକ ମିଳାମିଶା କେବଳ ଶାରୀରିକ । ସେଥିପାଇଁ ସ୍ତ୍ରୀସ୍ୱାଧୀନତାର ପ୍ରତି-କ୍ରିୟା ବର୍ଷକ ଭିତରେ ଆରମ୍ଭ ହେଲା । ତା ପରେ ତିନି ଚାରି ବରଷ ଉଭୟେ ନିଜ ନିଜ କାମରେ ବ୍ୟସ୍ତ ରହିଲେ । ମେଧାବୀ କାଶୀନାଥ ବ୍ୟସ୍ତ ରହିଲା, ତାର ଓକାଲତିରେ ଏବଂ ପଇସା ରୋଜଗାର କରିବାରେ । କମଳା ବ୍ୟସ୍ତ ରହିଲା, ବଙ୍ଗଳା, ଇଂରାଜି, ଓଡ଼ିଆ ପ୍ରଭୃତି ନାନାପ୍ରକାର ନଭେଲ, ନାଟକ ଏବଂ ମାସିକ ଓ ଦୈନିକ ପତ୍ରିକା ପଢ଼ି ଅଜସ୍ର ଅପରିପକ୍ୱ ଚିନ୍ତାଜ୍ୱରରେ ମସ୍ତିଷ୍କକୁ ଭାରାକ୍ରାନ୍ତ କରିବାରେ ଏବଂ ସେ ସବୁକୁ ଦେଶର ନାନାବିଧ ମାସିକ ପତ୍ରି-କାରେ ଉଦ୍‌ଗାର କରି ନିଜ ବଦ୍‌ହଜମିରେ ଦେଶବାସୀଙ୍କୁ ଉତ୍ୟକ୍ତ କରିବାରେ ।

ଏହି ସମୟରେ ଦେଶ ଉପରକୁ ମାଡିଆସିଲା ଅସହଯୋଗ ଆନ୍ଦୋଳନର ଡେଉ, ଦେଶସେବାର ଆହ୍ୱାନ । ତା ସାଙ୍ଗେ ସାଙ୍ଗେ ପରଦା ଛିଣ୍ଡିଲା, ଓଢଣା ଖସିଲା, ଓଡ଼ିଆ ଘରର ଝିଅ ବାହାରିଲା ପଦାକୁ ଦେଶର ଦୁଃଖ ମୋଚନ କରିବାକୁ କାନ୍ଧକୁ କାନ୍ଧ ମିଳାଇ ପୁଅଙ୍କ ପାଖରେ ଛିଡ଼ା ହୋଇ । ଦେଶର ଏ ଡ଼ାକ ଶୁଣି ସ୍ତ୍ରୀ ସ୍ୱାଧୀନତାର ଅଗ୍ରଦୂତ ସ୍ୱରୂପେ ଅନ୍ତତଃ ଅଜ୍ଞାତର ବନ୍ଧନ ଛିନ୍ନ କରିଥିଲେ ଯେଉଁ କେତେ ଜଣ ଓଡ଼ିଆ ଘରର ଝିଅ, କମଳା ସେମାନଙ୍କ ମଧ୍ୟରୁ ଜଣେ ।

ସ୍ୱାମୀ କାଶୀନାଥ ଯଦିବା ସ୍ତ୍ରୀର ଏହି ଦେଶସେବାର ବେପରଦା ଭାବକୁ ବଡ ବେଶି ପସନ୍ଦ କରୁ ନ ଥିଲା, ତଥାପି କି କାର୍ଯ୍ୟରେ କିଅବା ବାକ୍ୟରେ

ତାର କୌଣସି ପ୍ରତିବାଦ ବା ପ୍ରତିବନ୍ଧକତା କରୁ ନ ଥିଲ । ଫଳରେ ସ୍ତ୍ରୀର ଦେଶସେବା କାର୍ଯ୍ୟ ଅଗ୍ରସର ହେବାକୁ ଲଗିଲ୍ ଘରର ସେବା ଏବଂ ସ୍ୱାମୀ ସେବାକୁ ମାଡଚକଚି । ଦେଶର ସେବା ସ୍ତ୍ରୀର ସମୟକୁ ଏପରି ଅଧିକାର କରିବାକୁ ଲଗିଲ ଯେ, ଅନ୍ତତଃ ରାତି ନଅଟା ଦଶଟା ପୂର୍ବରୁ ସ୍ୱାମୀର ସ୍ତ୍ରୀ ଦର୍ଶନ କଷ୍ଟକର ହୋଇଉଠିଲ୍ । ସେଥିପାଇଁ ଆଜ କଚେରୀରୁ ବାହାରିବା ବେଳେ ରୋଜଗାରର ପରିମାଣ ଦେଖି ଯଦିବା ମନଟା ବଡ଼ ବେଶି ଘରମୁହାଁ ହୋଇଥିଲ, ତଥାପି ସ୍ତ୍ରୀର ଅନୁପସ୍ଥିତି ଆଶଙ୍କା କାଶୀନାଥକୁ ଟାଣିଲ୍ ପ୍ରଥମେ କାଠଯୋଡି ବନ୍ଧ ଉପରକୁ ଦେହ ମନର ଶ୍ରାନ୍ତି ଦୂର କରିବାକୁ ନଈକୂଳର ସନ୍ଧ୍ୟାବେଳ ପବନରେ । ଯେତେବେଳେ ରାସ୍ତାର ବିଜୁଳିବତୀ ଜଳିଲ୍ କଟକ ସହରର ଅନ୍ଧାର ରାତିର ଶୋଭା ବଢାଇବାକୁ, କାଶୀନାଥର ଗାଡି ଆସି ଲଗିଲ୍ ତା ଘରର ଫାଟକ ପାଖରେ । ଘର ଭିତରେ ପଶିଲ୍ କ୍ଷଣି ବୁଝି ପାରିଲ୍ ଏଯାବତ୍ ଯାହା ଆଶଙ୍କା କରି ଆସୁଥିଲ, ତାହା ଅମୂଳକ ନୁହେଁ । ପୁରୁଣା ଚାକର ଉଦ୍ଧବା ଆସି ବାବୁଙ୍କର ଲୁଗାପଟା ବଦଳିବାରେ ସାହାଯ୍ୟ କଲ, ଆଉ ପୂଝାରୀର ତତ୍ତ୍ୱାବଧାନରେ ଜଳଖିଆ କାର୍ଯ୍ୟ ସରିଲ୍ । ତା ପରେ କାଶୀନାଥ ସିଧା ସିଧା ଯାଇ ପଶିଲ୍ କଚେରୀ ଘରେ ଏବଂ ଅଭ୍ୟାସ ଅନୁସାରେ ବିଳମ୍ବ ଟାଣର ଜ୍ୱାଳା ନିବାରଣ କଲ୍ ଆଇନ ଚର୍ଚ୍ଚାରେ ମନୋନିବେଶ କରି । ମୋହରିର ମହକିଲ ବିଦାୟ କରି ଯେତେବେଳେ କାର୍ଯ୍ୟ ସାରି ଉଠିଲ୍, ସେତେବେଳେ ଦଶଟା ବାଜେ ବାଜେ । ଉତ୍କଳର ଆହ୍ୱାନରେ ଗଲ୍ ସ୍ୱାଦିରେ ଭୋଜନ କରିବାକୁ ପୂଝାରୀର ତତ୍ତ୍ୱରରେ । ସ୍ତ୍ରୀ ଆସିଛି କି ନାହିଁ ଚାକର ବାକରଙ୍କୁ ଲଜ୍ଜାରେ ପଚାରି ପାରିଲ ନାହିଁ ।

ଖାଇ ସାରି ଶୋଇବା ଘରକୁ ଯାଇ ଖଟ ଉପରେ ଶ୍ରାନ୍ତ ଦେହ ମନ ଲମ୍ବାଇ ଦେଲ୍ । ସାମନାରେ କାନ୍ଥ ଉପରେ କମଳାର ଫଟୋ ଉପରେ ଆଖି ପଡିବାରୁ ଅନାଇ ରହିଲ୍ ତାର ସ୍ଫୁରିତାଧରକୁ; ତା ପରେ ଆଖି ବୁଜି ଭାବିବାକୁ ଲଗିଲ, ସ୍ତ୍ରୀର ଯେଉଁ ପରିବର୍ତ୍ତନ ହୋଇଛି, ତାରି ବିଷୟରେ । ଦେହରେ ତାର ଯଥେଷ୍ଟ ପରିବର୍ତ୍ତନ ହୋଇଛି । ସେ ଆଉ ଚଉଦ ପନ୍ଦର ବର୍ଷର ସେହି ଟିଙ୍ଗିଆ ଝୁଅଟିଏ ନାହିଁ । ପ୍ରଥମ ଯେତେବେଳେ

# ସାମୟିକ

କମଳାକୁ ବାହା ହୋଇଥିଲା,ଯେତେବେଳେ ତାହା ଦେହରେ ଯୌବନର ଆରମ୍ଭ ମାତ୍ର,ଅଙ୍ଗପ୍ରତ୍ୟଙ୍ଗ ସବୁ ପରା ଛାଡ଼ି ବଢ଼ିବାକୁ ଆରମ୍ଭ କରିଛି । ମାଘମାସିଆ କୁହୁଡ଼ିରେ ଘୋଡ଼େଇ ହୋଇ ସୂର୍ଯ୍ୟ ଯେପରି ନିଜ ଉଦୟର ଆଭାସଟିକ ଦେଉଥାଏ, ଯୌବନ ତାର ସେତେବେଳେ ସେହିପରି କୈଶୋରର ଅନଭିଜ୍ଞତାରେ ଆଚ୍ଛନ୍ନ । ବିବାହର ପ୍ରଥମ କେତେକ ଦିନ ଭିତରେ ବନ୍ଧନମୁକ୍ତ କାମନା ତାର ଯେପରି ଭାବରେ ଚରିତାର୍ଥ ହେଲା,ସେଥିରୁ ସେ ବୁଝିଲା ସ୍ୱାମୀର ଅନମଣ ବାଳିକା ବଧୂର ଦେହମନରେ ଯୌବନର ଉନ୍ମାଦନାର ଅଭାବରୁ ଅଭ୍ୟର୍ଥିତ ହେଉ ନାହିଁ,ବରଂ କରୁଣା ଉଦ୍ରେକ କରୁଛି । ତା ପରେ ବିବାହିତ ଜୀବନର ଯେ ଦୀର୍ଘ ପାଞ୍ଚ ଛ ବର୍ଷ କଟିଛି, ତା ଭିତରେ ଦେହମନ ଉଭୟର ଅଯତନ ବଢ଼ିଛି । ଏକାଠି ରହିବା ଫଳରେ ସ୍ତ୍ରୀର କ୍ରମବିକଶିତ ଯୌବନ ସ୍ୱାମୀର ଆଗ୍ରହାତିଶଯ୍ୟରେ ଯେ ସଂକ୍ରମିତ ହୋଇ ନାହିଁ,ତାହା ନୁହେଁ । କାଶୀନାଥ ବୁଝିଛି, ସ୍ତ୍ରୀଠାରେ ଯଦିବା ତାର ପ୍ରବୃତ୍ତି ଚରିତାର୍ଥ ହୋଇଛି, ତା କେବଳ ସ୍ତ୍ରୀ ଭିତରେ ଥିବା ପଶୁଟିକୁ ଉତ୍ତେଜିତ କରି; କିନ୍ତୁ ନାରୀହୃଦୟର ଅତି ନିଭୃତ କୋଣରେ ଅଧିଷ୍ଠିତ ଯେଉଁ ଗୋପନଶୀଳା ପ୍ରେମ, ତାର ସନ୍ଧାନ ଯେ ସେ ଏଯାବତ୍ ପାଇଛି, ସେ ଭରସା ତାର ନାହିଁ । କାହିଁ, ଦେଖିଛି ବୋଲି କେବେ ତ ତାର ମନେ ପଡ଼ୁ ନାହିଁ,କମଳାର ସେହି ଢଳଢଳ ତରଳ ଭାବ, ଯାହା ତାର ଆଖି ମୁହଁରେ ଫୁଟି ଉଠି ହୃଦୟର ସେହି ଆଗ୍ରହାତିଶଯ୍ୟକୁ ପ୍ରକାଶ କରେ, ଯାହା ପ୍ରେମିକର ଅଦର୍ଶନରେ ପ୍ରେମିକାକୁ ଉନ୍ମନା କରି ରଖେ ! ପ୍ରକୃତ ପ୍ରଣୟ ଯେପରି ହୃଦୟର ବାତାୟନ ଖୋଲି ତାର ପାଖରେ ଜଗି ବସି ଦୀର୍ଘ ବିରହର ପ୍ରହର ଗଣୁଥାଏ, ଦୂରରୁ ପ୍ରେମିକର ଆଗମନର ସୂଚନା ପାଇଲେ ଅନ୍ତର ତାର ଦୁଇ ହାତ ବଢ଼ାଇ ଦିଏ, ଦଉଡ଼ି ଯାଇ ପାଛୋଟି ଆଣେ, କାହିଁ କମଳାର ହୃଦୟରେ ଏ ଭାବ ତ ସେ ଏ ଯାଏ ଦେଖି ନାହିଁ ! ମାଗିଛି, ପାଇଛି; ସତେ ଯେପରି ଅଧିକାରର ଅନୁରୋଧରେ ବା ଉପରୋଧରେ ।

## ସହଧର୍ମିଣୀ

## [ ଦୁଇ ]

କାଶୀନାଥର ମନ ଯେତେବେଳେ ଚନ୍ଦ୍ରାସମୁଦ୍ର ମନ୍ଥନ କରି ଖୋଜି ବୁଲୁଥିଲା କମଳା ସହିତ ତାର ପରିଣୟ ମଧ୍ୟରେ ପ୍ରଣୟର ଅମୃତ, ସେତିକି-ବେଳେ କମଳା ଆସି ଗୋଡ଼ ଚପିଚପି ପଶିଲା ଶୋଇବା ଘରେ । କାଶୀନାଥକୁ ଆଖି ବୁଜି ଖଟ ଉପରେ ପଡିଥିବାର ଦେଖି ଅତି କ୍ଷୀଣସ୍ୱରରେ ପଚାରିଲା, "ଶୋଇଲଣି କି ?"

ଉତ୍ତରରେ ସ୍ୱାମୀ ପଚାରିଲା, "କମଳା, ସ୍ତ୍ରୀ କଣ ସ୍ୱାଧୀନ ସ୍ୱାମୀଠୁଁ ?"

କମଳା ବାହାରର ଲୁଗାପଟା ଉତାରି ଘରଲୁଗା ପିନ୍ଧି ଆସି ଖଟ ଉପରେ ବସିଲା । କହିଲା, "କାହିଁକି ? ତୁମେ କଣ କହୁଛ, ସ୍ତ୍ରୀ ସ୍ୱାମୀଠୁ କ'ଣ ସ୍ୱାଧୀନ ?"

କାଶୀନାଥ କହିଲା, "ମୋର ମନେ ହୁଏ, ସ୍ତ୍ରୀ ସ୍ୱାଧୀନ ସ୍ୱାମୀଠାରୁ ଟଙ୍କା ପଇସା, ଘରଦୁଆର, ଗାଡିଘୋଡ଼ା, ମଉଜମଜଲିସ୍ ଏବଂ ସେ ଯଦି ପରଦା-ନସୀନ୍ ନ ହୁଏ, ତାହାହେଲେ ନିଜର ଅବାରିତ ଯଥେଚ୍ଛାସ୍ୱାଧୀନତା ସକାଶେ ସ୍ୱାମୀ ନାମକ ଜୀବର ଆଶ୍ରୟ ଅବା ଆଡୁଆଳ ।"

ସ୍ତ୍ରୀ କହିଲା, "ତୁମ ମତରେ ବୋଧହୁଏ ଏ ସବୁରେ କେବଳ ପୁରୁଷର ଏକଚେଟିଆ ଅଧିକାର ? କିନ୍ତୁ କେବେ ଭାବି ଦେଖିଛ, ଆଜିକାଲିର ସ୍ତ୍ରୀଲୋକ ଯଦି ସୁବିଧା ପାଇଥାନ୍ତା ରୋଜଗାର କରିବାର କ୍ଷମତା ହାସଲ କରିବାକୁ, ତାହାହେଲେ ଏ ସବୁ ଉପଭୋଗ କରିବା ନିମନ୍ତେ ତାକୁ ସ୍ୱାମୀର ମୁଖାପେକ୍ଷୀ ହେବାକୁ ହୁଅନ୍ତା ନାହିଁ । ଏ ଉପଭୋଗ ଯେ ସେ ସ୍ୱାମୀ ଅର୍ଜନରେ କରେ, ସେଥିପାଇଁ ଦାୟୀ ତୁମେ ପୁରୁଷ ଜାତି ଏବଂ ଯେଉଁ ସମାଜଟି ଗଢିଛ, ସେହି ସମାଜ । ସ୍ତ୍ରୀର ଜନ୍ମ ଦିବସରୁ ସେ ଉଠିଲେ, ବସିଲେ, ଶୋଇଲେ, ଜାଗିଲେ, ସଦାବେଳେ ତା କାନପାଖରେ ମନ୍ତ୍ର ଫୁଙ୍କିଛ—ତା ଜନ୍ମ, ଜୀବନ ପର ପୁରୁଷର

ପାଦତଳେ ବଙ୍କା; ଆଉ ସେ ଯଦି ସେହି ପୁରୁଷର ହାତ ଧରିବା ସାଙ୍ଗେ ସାଙ୍ଗେ ତା ଭୋଗ ଭାଗ୍ୟରେ ହାତ ପକାଏ, ସେତେବେଳକୁ କାହିଁକି ପାଟିକର ଖାଇଲି ଖାଇଲି ?"

କାଶୀନାଥ କହିଲା, "ଏଥିରୁ କଣ ବୁଝିଲ ମୋର ଭାଗ୍ୟକୁ ଭୋଗ କରୁଛ ବୋଲି ମୋର ଆପତ୍ତି ? ସ୍ୱାମୀର ଭାଗ୍ୟକୁ ଆଦରିବା ସ୍ତ୍ରୀର ସ୍ୱାଭାବିକ ଏବଂ ସେଥି ସକାଶୁ ସ୍ୱାମୀ କେବେ କହେ ନାହିଁ—ଖାଇଲି, ଖାଇଲି । ତେବେ ବିଷମ ସେଇଠି ଠେକେ, ଯେଉଁଠି ଭାଗ୍ୟକୁ ଭୋଗ କରାଯାଏ ଅବଲୀଳାକ୍ରମେ, ଅଥଚ ଭାଗ୍ୟଧର ପାଏ ଅବହେଳା ।"

କମଳା କହିଲା,"ତୁମେ କହିବାକୁ ଚାହିଁ, ମୁଁ ତୁମକୁ ଅବହେଳା କରୁଛି ? ତାହାହେଲେ ତୁମର ଇଚ୍ଛା, ଚାକରବାକରଙ୍କୁ ମୁଁ ବିଦାୟ କରିଦିଏ । ଆପଣା ହାତରେ ଘରଦୁଆର ଓଲେଇବାଠୁ କଂସାବାସନ ମାଜିବା, ରନ୍ଧାବଢା କରିବା ଇତ୍ୟାଦି କାମ ଏବଂ ତୁମର ବ୍ୟକ୍ତିଗତ ଖିଜମତ, ଏ ସମସ୍ତ ମୁଁ ନିଜ ହାତରେ କରେ । ତେବେ ଯାଇ ମୋର ସ୍ତ୍ରୀଜୀବନ ଚରିତାର୍ଥ ହେବ ।"

କାଶୀନାଥ—ଅବଶ୍ୟ ତୁମକୁ କୌଣସି କାମ ନିଜ ହାତରେ କରିବାକୁ କେହି କହୁ ନାହିଁ । ତା ବୋଲି, କାମଟା କେମିତି ହେଲା, ଭଲ ହେଲା କି ମନ୍ଦ ହେଲା, ତା ବି ଦେଖିବ ନାହିଁ ? ଧର ରନ୍ଧାବଢା କଥା । ଚାକର ପୂଝାରୀ ତ ତାର ପୂରା ମାଲିକ । ଆଚ୍ଛା, ରନ୍ଧା କେମିତି ହେଲା, ସ୍ୱାମୀ ଭଲ ଖାଇଲା କି ନାହିଁ, ଏ କଥା କଣ ସ୍ତ୍ରୀର ଦେଖିବାର ନୁହେଁ ?

କମଳା—ରନ୍ଧାବଢା ମୁଁ ନ କଲେ ସୁଦ୍ଧା ପ୍ରତିଦିନର ବରାଦ୍ ତ ମୁଁ କରିଦିଏ । ତେବେ, ପୂଝାରୀ ଯଦି କୌଣସି ଦିନ ଭଲ ନ ରାନ୍ଧିଲା, ସେଥି-ପାଇଁ ମୁଁ ତାକୁ ବକିବି ତ ? ତୁମେ କାହିଁକି ପୂଝାରୀକି ନିଜେ ତାଗିଦ୍ କରି-ଦେଲ ନାହିଁ ? ଦୋଷ ହେଲା ପୂଝାରୀର, ଆଉ ନିଦିବ ତାକୁ ମୋ ଉପରେ ?

କାଶୀନାଥ—ଏ ବେଳାର ରନ୍ଧା ଖାଇଚ ତ ?

କମଳା—ନା ।

କାଶୀନାଥ—ଖାଇଲ ନାହିଁ ଯେ ?

କମଳା—ମୁଁ ଖାଇଚି ।

କାଶୀନାଥ—ତାର ମାନେ ?

କମଳା—ଦେଖ, ଆଜି ନିଶା ନିବାରଣ ସଙ୍ଘର ସଭା ଭାଙ୍ଗୁ ଭାଙ୍ଗୁ ନଅଟା ବାଜିଗଲା । ଯଦୁ ବାବୁଙ୍କ ସାଙ୍ଗରେ ଫେରିଲାବେଳେ ସେ ବହୁତ କରି କହିଲେ, ତାଙ୍କର ସେଠି ଖାଇକରି ଆସିବାକୁ ।

କାଶୀନାଥ—ତାର ଅର୍ଥ, ଯଦୁଆର ହୋଟେଲରେ ଆଜି ରାତିର ଭୋଜନ ସାରିଛ ?

ଏତକ କହି କାଶୀନାଥ କିଛିକ୍ଷଣ ଗମ୍ଭୀର ଭାବରେ ନୀରବ ରହିଲା ।

କମଳା—ଚୁପ୍ କରି ରହିଲ ଯେ ? କାହିଁକି, ହୋଟେଲରେ ଖାଇଲେ କଣ ପାପ ହେଲା ?

କାଶୀନାଥ—ତୁମ କଥାରୁ ଜଣାପଡୁଛି, ପାପ ଏପରି କିଛି ଗୋଟାଏ ବଡ଼ ମାରାତ୍ମକ ଜିନିଷ ନୁହେଁ । ତାର ଯେତେ କଣିକି ଯାଇପାର , କେବଳ ତାର ସୀମା ଭିତରେ ନ ପଡୁଥିଲେ ହେଲା । ଯାଉ ସେ କଥା । ତୁମକୁ ଖାଇ-ବାକୁ ଆଉ କୋଉଠି ଜାଗା ମିଳିଲା ନାହିଁ, ଗଲ ଖାଇବାକୁ ଯଦୁଆର ହୋଟେଲକୁ ? ସେ ତ ନିଜେ ଚୋର ଦାଉଡିକଟା, ଆଉ ରାଜ୍ୟର ଯେତେ ଅକର୍ମା-ଙ୍କର ଅଡ୍ଡା ହୋଇଛି ତା' ହୋଟେଲ ।

କମଳା—ଅକର୍ମା ହେବା ଯଦି ଦୋଷଜନକ, ତାହାହେଲେ ସେ ଦୋଷ ଅକର୍ମାଙ୍କର ଯେତେ ନୁହେଁ, ସେତେ ହେଉଛି ସେହି ଶାସନପଦ୍ଧତିର, ଯେଉଁ ଶାସନ ପଦ୍ଧତିକୁ ବିନା ବାକ୍ୟରେ ମୁଣ୍ଡ ପାତି ମାନି ନେଇଛ । ଦେଖ,

ଯେତେବେଳେ ମୁଁ ଦେଖେ, ସୁସ୍ଥ ସବଳ ଲୋକ ବେକାର୍ ହୋଇ ବସି ରହୁଛନ୍ତି, କାମ କରିବାକୁ ଇଚ୍ଛା ଥିଲେ ମଧ୍ୟ କାମ ପାଉ ନାହାନ୍ତି, ସେତେବେଳେ ତାର ଚରିତ୍ରରେ ଯଦି କିଛି ଉଚ୍ଛୃଙ୍ଖଳତା ପ୍ରକାଶ ପାଏ, ମୁଁ ଅନ୍ତତଃ ସେଥିରେ ବହୁ ବେଶି ଆଶ୍ଚର୍ଯ୍ୟ ହୁଏ ନାହିଁ । ଅବଶ୍ୟ ତୁମେ ଯେପରି ବଡ଼ ବେଶି ବିଚଳିତ ନ ହୁଅ, ସେଥିପାଇଁ ମୁଁ କହିବାକୁ ବାଧ୍ୟ ହେଉଛି ଯେ, ମୁଁ ଯେତେବେଳେ ଯଦୁ ବାବୁଙ୍କ ହୋଟେଲରେ ଖାଉଥିଲି, ସେତେବେଳେ ତୁମ ଦୃଷ୍ଟିରେ ଅସ୍ପୃଶ୍ୟ ଏହି ଯେଉଁ ଅକର୍ମାଙ୍କର ଦଳ, ସେଥିରୁ କାହାରିକୁ ପାଖରେ ଦେଖି ନାହିଁ, ଅର୍ଥାତ୍ ମୁଁ ଖାଇବା ସମୟରେ ଯେଉଁମାନେ ଖାଉଥିଲେ, ସେମାନେ ତୁମରି ପରି ଶାନ୍ତ ଶିଷ୍ଟ ଦେଖାଯାଉଥିଲେ ଏବଂ ଖାଇସାରିବା ପରେ ସୁନାପୁଅ ପରି ନିଜ ନିଜର ଦାମ ଦେଇ ଚାଲିଯାଉଥିଲେ । ଆଉ, ହୋଟେଲରେ ଖାଇବା କଥା ଯଦି କୁହ, ତୁମେ ଯାହାଙ୍କୁ ଆଦର୍ଶ ବୋଲି ମାନ, ସେହି ସାହେବ ମେମ୍‌ମାନଙ୍କ ବିଷୟରେ ମୁଁ ଶୁଣିଛି ଯେ, ସେମାନଙ୍କ ମଧ୍ୟରୁ ଅନେକେ କୁଆଡ଼େ ନିଜର ଘରଦୁଆର ନ କରି ଜୀବନଟା ହୋଟେଲରେ କଟାଇ ଦିଅନ୍ତି ।

କାଶୀନାଥ—ହୋଟେଲରେ କେବଳ ଖାଇବା ପିଇବା ନୁହେଁ, ଏମାନଙ୍କ ଜୀବନଯାପନ କରିବା ବିଷୟରେ ଏବଂ ବେକାର ସମସ୍ୟା ସମ୍ବନ୍ଧରେ ତୁମର ଯେ ବିଚକ୍ଷଣ ଗବେଷଣା, ତାର ପରିଚୟ ପାଇ ମୁଁ ବଡ଼ ପ୍ରୀତ ହେଲି । ମୋତେ ଖାଲି ଏତିକି ଆଶ୍ଚର୍ଯ୍ୟ ଲାଗୁଛି, ତୁମକୁ ଆଉ ଲୋକ ମିଳିଲା ନାହିଁ କି ଜାଗା ମିଳିଲା ନାହିଁ ଯେ, ତୁମେ ଏ ଯଦୁଆଠା ସାଙ୍ଗରେ ଯାଇ ତା ହୋଟେଲରେ ଖାଇଲ ! ଗୋଲଗାଲ ଚେହେରା ଓ ହୃଷ୍ଟପୁଷ୍ଟ ଶରୀର ଛଡ଼ା ଆଉ କିଛି ସୁପାରିସର ବିଷୟ ତାର ଅଛି ବୋଲି ଅନ୍ତତଃ ମୋର ତ ମନେହୁଏ ନାହିଁ । ବିଦ୍ୟାରେ ତ ଦିଗ୍‌ଗଜ, ଟଙ୍କାପଇସାର ଅବସ୍ଥା ଯାହା, ସେଥିରେ ମୁଁ ଯଦି ନ ଦେଇଥାନ୍ତି, ତାହା ହେଲେ ଏ ହୋଟେଲ ବି ନ ଥାନ୍ତା କି ତୁମକୁ ସେଠି ଚର୍ବ୍ୟ-ଚୋଷ୍ୟ ଖୁଆଇବାର ଯେଉଁ ଶ୍ଳାଘା, ତାର ଅବକାଶ ବି ନ ଥାନ୍ତା ।

କମଳା—ତୁମେ ଟଙ୍କା କିଛି ସେମିତି ଦେଇ ନାହଁ ।

କାଶୀନାଥ—ହଁ, ମୁଁ ସ୍ୱୀକାର କରୁଛି, ମୁଁ ତାଙ୍କୁ ଠଙ୍କା ସେମିତ ଦେଇ ନ ଥାନ୍ତି, କେବଳ ତୁମେ ସୁପାରସ୍ କରିବାରୁ ଦେଲି ।

କମଳା—ତୁମେ ତ ଦାନ ଦେଇ ନ, ଧାର ଦେଇଛ ।

କାଶୀନାଥ—ବିନା ଲେଖାପଢାରେ, ଅର୍ଥାତ୍ ନ ଦେଲେ ଆଦାୟ କରିବାର ଉପାୟ ନାହିଁ ।

କମଳା—ଚେହେରା ଆଉ ବଳିଷ୍ଠ ଶରୀର ଛଡ଼ା ଯଦି ଆଉ କିଛି ପସନ୍ଦ-ଦାର ପଦାର୍ଥ ତାଟି ନ ଥିଲା, ତେବେ ବିନା ଲେଖାପଢାରେ ଠଙ୍କା ତାଙ୍କୁ ଦେଲ କାହିଁକି ? ତାର ଚେହେରା ଆଉ ଶରୀର ସମ୍ବନ୍ଧରେ ଯେପରି ଖୁଣ୍ଟେଇ ଖୁଣ୍ଟେଇ ଉଲ୍ଲେଖ କରୁଛ, ସେଥିରୁ ତୁମର ପସନ୍ଦର ଦଉଡ଼ଠା ବୁଝିବାକୁ ମଧ୍ୟ ବାକି ରହୁ ନାହିଁ । ନିଜ ଅଭାବର କ୍ଷୋଭ ଅବା ଯେଉଁଥିରେ ସ୍ତ୍ରୀ ପ୍ରତି ଅନୁଚିତ ଅଭିପ୍ରାୟ ଆରୋପ କରାହୁଏ, ଏପରି ଯେ ଅଯଥା ଆକ୍ରୋଶ, ତାଙ୍କୁ ଏଡ଼େ ପତଳା ବାକ୍ୟଜାଲରେ ଘୋଡ଼ାଇବାକୁ ଯେ ଚେଷ୍ଟା କରେ, ସେ ହଜାର ପାଠ ପଢି-ଥିଲେ ସୁଦ୍ଧା ତାର ପସନ୍ଦ ବା ରୁଚିର ଯେ ଉନ୍ନତି ହୋଇ ନାହିଁ, ଏ କଥା ମୁଁ ଜୋର କରି କହିବ । ମୁଁ ଯାହା ଦେଖିଛି, ସେଥିରୁ ବୁଝିଛି, ଯଦୁବାବୁ ତୁମ କହିବା ପ୍ରମାଣେ ବାହାରକୁ ଦେଖିବାକୁ ଯେ କେବଳ ସୁପୁରୁଷ, ତା ନୁହେଁ; ମାନ ତାଙ୍କ ଭିତରଠା ମଧ୍ୟ ସୁ । ସେ ବି, ଏ., ଏମ୍. ଏ. ପାଶ କରି ନାହାନ୍ତି ସତ ; କିନ୍ତୁ ବୁଦ୍ଧିବୃତ୍ତିରେ ସେ ଅନେକ ବି. ଏ., ଏମ୍. ଏ. ଙ୍କର ସମକକ୍ଷ । ପାଠୁଆଙ୍କର ଯେଉଁ ସାହସ ନାହିଁ, ୟୁରୋପଯୋଗୀ ପ୍ରେରଣାର ବଶବର୍ତ୍ତୀ ହୋଇ ଦେଶର ଏବଂ ଦଶର ଉନ୍ନତି ନିମନ୍ତେ ପ୍ରବଳପ୍ରତାପ ଶାସନ ବିରୁଦ୍ଧରେ ମୁଣ୍ଡ ଉଠେଇବାକୁ ତାଙ୍କର ସେହି ସତ୍‌ସାହସ ଅଛି । ମୁଁ ଯାହା ଦେଖୁଛି, ସେଥିରୁ ମୋର ମନେହୁଏ, ସେ ହୋଟେଲ ଖୋଲି ନାହାନ୍ତି ଲାଭ କରି ବଡ଼ଲୋକ ହେବାକୁ, ତାଙ୍କର ସ୍ୱରାଜ୍ୟଆଶ୍ରମ ଓ ଅନାଥାଶ୍ରମକୁ ଖିଆପିଆ ଯୋଗାଇବାରେ ଯେଉଁ ଅକାତର ବଦାନ୍ୟତା, ସେଥିରେ ସେ ହୋଟେଲକୁ ହୋଟେଲ ନ କହି ସଦାବ୍ରତ କହିବାଇ ଅଧିକ ସତ୍ୟ ହେବ ।

# ସାମଯ୍ରିକ

କାଶୀନାଥ—ଯଦୁଆର ଚରିତ୍ରରେ ଏତେଗୁଡ଼ାଏ 'ସ୍ୱ'ର ସମାବେଶ ଯେ ତୁମ ଆଖିରେ ପଡ଼ୁଛି, ତାହା ହେଉଛି ତୁମ ଆଖି ଉପରେ ଥିବା ପକ୍ଷପାତିତାର ରଙ୍ଗିନ ଚଷମାର ଫଳ । ଏହି ଚଷମା ହେଉଛି ବ୍ୟବଧାନର ସେହି କୁହୁକ, ଯାହା ସକାଶୁ ଦୂର ପର୍ବତ ଅଧିକ ସୁନ୍ଦର ଦିଶେ । ତୁମ ସହିତ ଯଦୁଆର ପରିଚୟ ତିନି ଚାରି ବରଷ ହେଲା ହୋଇଛି; କିନ୍ତୁ ମୁଁ ତାକୁ ପିଲାଦିନରୁ ଜାଣେ । ଯେଉଁ ସବୁ ଉପକରଣରେ ତାହାର ଚରିତ୍ର ଗଢ଼ା, ଏ ପ୍ରକାର ତାର ଅତୀତ ଜୀବନର ସମସ୍ତ ଘଟନାବଳୀରୁ ପ୍ରାୟ ଗୋଟିଏ ହେଲେ ମୋ କତିରେ ଅଛପା ନୁହେଁ । ତାର ମନର ଗତି ସ୍ୱଭାବତଃ ମନ୍ଦଆଡ଼କୁ, କେବେ ଅବା ଯଦି କିଛି ଭଲ ସେ କରିପକାଏ, ତାହା ହୁଏ ତ ନିୟମର ବ୍ୟତିକ୍ରମ; ନୋହିଲେ ଶିକାରକୁ ସମ୍ପୂର୍ଣ୍ଣ କରଗତ କରିବାର ଗୋଟାଏ ଫାନ୍ଦ । ଆଉ ଯୁକ୍ତି ତର୍କ କରି କିଛି ଲାଭ ନାହିଁ । ଯୁକ୍ତି ତର୍କର ଶେଷ ନାହିଁ କି ଖାଲି ଯୁକ୍ତି-ତର୍କରେ ମନ ମାନେ ନାହିଁ । ରାତି ବେଶି ହେଲାଣି । ତେବେ ଶୋଇବା ପୂର୍ବରୁ ମୁଁ ତୁମକୁ ଗୋଟିଏ ଅନୁରୋଧ କରିବାକୁ ଇଚ୍ଛା କରୁଛି ।

କମଳା—କଣ କହୁ ନା ?

ଗଭୀର ସ୍ନେହରେ କାଶୀନାଥ ନିଜ ଆଡକୁ ସ୍ତ୍ରୀକୁ ଟାଣି ଆଣି ତା ଉପରେ ହାତ ପକାଇ କହିଲା, "କମଳା, ଦୀର୍ଘ ପାଞ୍ଚ ବରଷର ପ୍ରତୀକ୍ଷା ପରେ ପ୍ରଭୁଙ୍କ କୃପାରୁ ପ୍ରଣୟ ବୃକ୍ଷ ଫଳ ଧରିବାକୁ ଆରମ୍ଭ କରିଛି । ତୁମେ ଜାଣ, ତୁମେ ଦୁଇମାସ ହେଲା ଅନ୍ତଃସତ୍ତ୍ୱା । ମୁଁ ତୁମର କୌଣସି ସ୍ୱାଧୀନ ଇଚ୍ଛାରେ ବାଧା ଦେବାକୁ ଚାହୁଁ ନାହିଁ । ତୁମ ନିଜ ନିମନ୍ତେ ଏବଂ ଯେ ଅଭ୍ୟାଗତଟି ଅନାଗତ, ତା ପାଇଁ କେବଳ ବନ୍ଧୁଭାବରେ ଅନୁରୋଧ କରୁଛି, କି ଖାଇବା ପିଇବା କି ଶୋଇବା ଉଠିବା କିଅବା ନାନା ସଭାସମିତିରେ ଯୋଗ ଦେବାର ଅତ୍ୟଧିକ ଉତ୍ତେଜନା ଏବଂ ଅନିୟମରୁ ଆପଣାକୁ ରକ୍ଷାକର ।"

# ସହଧର୍ମିଣୀ

## [ ତିନି ]

କିଛିକ୍ଷଣ ପରେ ଶ୍ରାନ୍ତ କାଶୀନାଥ ନିଦ୍ରାରେ ଶୋଇପଡ଼ିଲା; କମଳା କିନ୍ତୁ ବେଶି ରକମ ଥକି ପଡ଼ିଥିଲେ ସୁଦ୍ଧା ନିଦ୍ରା ଆଉ ତା ଆଖିକି ଆସିଲା ନାହିଁ । ନିଦ୍ରିତ ସ୍ୱାମୀର ମୁହଁକୁ ଅନାଇଲା । ଦେଖିଲା, କାଶୀନାଥର କପାଳ ଉପରେ ଆଖି ଆଉ ମୁହଁକୋଣରେ ଚିନ୍ତା ଏବଂ ଉଦ୍‌ବେଗର ଯେଉଁ ସବୁ ରେଖା ପଡ଼ି ସମସ୍ତ ମୁହଁକୁ କର୍କଶ ଏବଂ ବନ୍ଧୁର କରି ରଖିଥିଲା, ତାହା କ୍ରମେ କ୍ରମେ ଉଭେଇ ଯାଉଛି । କିଏ ଯେପରି ତାର ଅଦୃଶ୍ୟ ହସ୍ତର କୋମଳ ସ୍ପର୍ଶରେ ଢିଲା କରି ଦେଉଛି ତାର ମୁହଁର ଶକ୍ତ ମାଂସପେଶୀ ସବୁକୁ । ଈର୍ଷା ହେଲା ମନରେ । ଭାବିଲା, ସ୍ୱାମୀ ପରି ସେ କାହିଁକି ଶ୍ରାନ୍ତ ଦେହମନ ନିଦ୍ରାର କୋଳରେ ଅର୍ପଣ କରି ନିଶ୍ଚିନ୍ତ ହୋଇପାରୁ ନାହିଁ ? ତାର ଚିତ୍ତ କଣ ସବୁବେଳେ ଝଞ୍ଜା ବତାସର ମଧ୍ୟ ଦେଇ ସନ୍ଧାନ କରୁଥିବ ମୁକ୍ତିର ପଥ, କଣ ଯୁକ୍ତିତର୍କର ଗୋଲକଧନ୍ଦା ଭିତରେ ପଶି ସଦାବେଳେ ସନ୍ଦେହରେ ଦୋଳାୟିତ ହେଉଥିବ, ସତ୍ୟର ଶାନ୍ତିମୟ ଆଶ୍ରୟ ଭୂମି ପାଇବ ନାହିଁ ବିଶ୍ରାମ କରିବାକୁ ?

ନାନା ଚିନ୍ତା ଭାବନାର ଭିତର ଦେଇ ରାତି କଟିଲା । ଯାହା କିଛି ନିଦ୍ରା ହେଲା, ତା ବୁଁଭଙ୍କା, ଛୁର ଛୁର ଭାଙ୍ଗି ଯାଉଥାଏ । ରାତି ପାହିଲାରୁ ସ୍ୱାମୀ ଉଠି ପ୍ରାତଃକୃତ୍ୟ ସାରି ନିଜ ଧନ୍ଦାରେ ମନଦେଲା । କମଳା ବେଳ କରି ଉଠିଲା । ସ୍ୱାମୀ କଚେରୀକୁ ଗଲାବେଳେ ଦେଖିଲା, କମଳା ଗାଧୋଇ ପାଧୋଇ ତା ନିଜ କୋଠରୀରେ ଆରାମ ଚଉକି ଉପରେ ନିର୍ଧୂମ ନିଦ୍ରାରେ ଶୋଇଛି, ମୁଣ୍ଡ ଧୋଇଥିବାରୁ ଗହଳ ବାଳ ଚଉକି ପଛ ପଟରେ ଶୁଖା ହୋଇଛି । କାଶୀନାଥ ସ୍ତ୍ରୀର ଏହି ସୁଷମାମୟ ଯୌବନସମ୍ଭାର କିଛିକ୍ଷଣ ଦେଖିବା ପରେ ଧୀରେ ଧୀରେ ଯାଇ ସନ୍ତର୍ପଣରେ ଫିଟିଥିବା କବାଟକୁ ଆଉଜାଇ ଦେଇ ଛାତି ଭିତରେ ଫୁଲି ଉଠୁଥିବା ଦୀର୍ଘ ନିଃଶ୍ୱାସକୁ ଚୁପି କଚେରୀକୁ ଯିବା ପାଇଁ ଗାଡ଼ିରେ ବସିଲା । ଭଉଣୀକୁ ଡ଼ାକି କହିଗଲା, "ମାଙ୍କର ଆଜି ଦେହ ଭଲ ନାହିଁ,

ଚଉକି ଉପରେ ଶୋଇଛନ୍ତି, ସେ ନ ଉଠିବା ଯାଏ ଦେଖୁ ଯେମନ୍ତ ତାଙ୍କ ନିଦ ନ ଭାଙ୍ଗେ ।"

କାଶୀନାଥର କଚେରୀ ଯିବା ପରେ ଯଦୁନାଥ ପାଖରୁ ଦୁଇ ତିନି ଥର ଲୋକ ଆସିଥିଲେ କଣ ଜରୁରୀ ଖବର ନେଇ; କିନ୍ତୁ ବିଶ୍ୱସ୍ତ ଉଚ୍ଛବା ସେ ଲୋକଙ୍କୁ ଭିତରକୁ ଛାଡି ଦେଇ ନାହିଁ, କି କମଳା ନିଦ ଭାଙ୍ଗି ଉଠିବା ପରେ ସେ ସମ୍ବନ୍ଧରେ ତାକୁ ମଧ୍ୟ କିଛି କହି ନାହିଁ । କମଳା ମଧ୍ୟ ଗତରାତିର କଥୋପ-କଥନ ଫଳରେ ସେ ଦିନ ଆଉ କୁଆଡେ ଯିବାକୁ ମନ ବଳାଇଲା ନାହିଁ ।

ରାତି ନଅଟା ସାଢେ ନଅଟା ବେଳକୁ ଖବରକାଗଜବାଲା ଫାଟକ ପାଖରେ ପାଟିକଲା, "ସମାଜ, ସମାଜ ।" ସେତେବେଳେ କାଶୀନାଥ ମକଦ୍ଦମା ନେଇ କଚେରୀ ଘରେ ବ୍ୟସ୍ତ । ଉଚ୍ଛବା ଅଭ୍ୟାସମତ ସମାଜ କାଗଜ ଆଣି କମଳା ହାତରେ ଦେଲା । କମଳା ମଧ୍ୟ ପ୍ରତିଦିନର ଅଭ୍ୟାସ ଅନୁସାରେ କାଗଜ ନେଇ ଫିଟେଇଲା ପଢିବାକୁ । କାଗଜର ଉପର ପଟରେ ବଡ଼ ବଡ ହରଫ୍‌ରେ ସେଦିନ ଖବରର ଯେଉଁ ସଂକ୍ଷିପ୍ତ ତାଲିକା ଦିଆହୋଇଥିଲା,ସେଥିରେ ଆଖି ପଡିବା ମାତ୍ରେ ମୁଣ୍ଡରେ ତାର ବିଜୁଳି ଖେଳିଗଲା । ଦେଖିଲା, ଲେଖା-ହୋଇଛି ଆଇନ ଅମାନ୍ୟ ଫଳରେ କଟକରେ ଗିରଫ୍‌ଦାରର ଧୂମ—ପିକେଟିଂ କରୁଥିବା ସତ୍ୟାଗ୍ରହୀଙ୍କ ଉପରେ ଲାଠିମାଡ଼ । ଅତ୍ୟଧିକ ଉତ୍ତେଜନାରେ ପହିଲେ ମିନିଟିଏ ଦୁଇ ମିନିଟ କିଛି ପଢିପାରିଲା ନାହିଁ, ତା ପରେ ଯେ ପର୍ଯ୍ୟନ୍ତ ନା ପିକେଟିଂ ସଂକ୍ରାନ୍ତ ସମସ୍ତ ଖବର ଗୋଟି ଗୋଟି କରି ତାର ମୁଖସ୍ଥ ନ ହେଲା, ସେ ପର୍ଯ୍ୟନ୍ତ ଥରକୁ ଥର କାଗଜର ସେହି ଅଂଶ ପଢିଲା । ତା ପରେ ଭାବିଲା, ସେ କେତେ ସ୍ୱାର୍ଥପର । ତାର ସହକର୍ମୀମାନେ ବେତମାଡ଼ ଲାଠିମାଡ଼ ଖାଇ କିଏ ଡାକ୍ତରଖାନାରେ କିଏ ନିଜ ଘରେ ପଡିଛନ୍ତି, ଆଉ ସେ ସ୍ୱାମୀ ସୋହାଗରେ ମାତି ଦେଶର ଏ ସମସ୍ୟାର ସମୟରେ ଘରେ ଆରାମ ଉପଭୋଗ କରୁଛି । ଖବର କାଗଜରୁ ଜାଣି ପାରିଲା, ଯଦୁନାଥ ମଧ୍ୟ ଆହତ, ଯଦିବା ଡାକ୍ତରଖାନାକୁ ପଠା

ହୋଇଥିବା ଲୋକଙ୍କର ତାଲିକା ଭିତରେ ତାର ନାମ ନ ଥିଲା । ମନେକଲା, ହୁଏ ତ ସେ ଏପରି ଆହତ ଯେ ସେପରି ଲୋକଙ୍କୁ ଗାରଦକୁ ନେବା ନିରାପଦ ହେବ ନାହିଁ ଭାବି ଘଟଣା ସ୍ଥଳରେ ତାଙ୍କୁ ଛାଡି ଦିଆହୋଇଛି ଏବଂ ପରେ ଦର୍ଶକମାନଙ୍କର ଅନୁଗ୍ରହରୁ ଘରେ ଆସି ପଡିଛି । ଯେତେବେଳେ କାଗଜରୁ ପଢିଲା, ଆଜି ସକାଳେ ଭାରତର କେନ୍ଦ୍ର ସଙ୍ଘରୁ ଜରୁରୀ ଖବର ଆସିଲା, ଆଜି ବିଦେଶୀ ଲୁଗା ଦୋକାନ ଏବଂ ମଦ ଦୋକାନରେ ପିକେଟିଂ ଆରମ୍ଭ କରିବାକୁ ହେବ ଏବଂ ତାରି ଫଳରେ ସ୍ଥାନୀୟ ସଙ୍ଘ ସ୍ଥିର କଲା ସେହିଦିନ ପିକେଟିଂ ଆରମ୍ଭ କରିବାକୁ, ଟିକିଏ ଆଶ୍ଚର୍ଯ୍ୟ ହୋଇ ଭାବିଲା, ତା କତିକି କାହିଁକି ସ୍ଥାନୀୟ ସଙ୍ଘର ବୈଠକ ସମ୍ବନ୍ଧରେ ବିଜ୍ଞାପନ ପଠାହେଲା ନାହିଁ ଅବା ଯଦୁବାବୁ କାହିଁକି କୌଣସି ଖବର ପଠାଇଲେ ନାହିଁ ।

କୌଣସି ଖବର ଆସିଥିଲା କି ନାହିଁ, ବୁଝିବା ସକାଶେ ଉଦ୍ଧବକୁ ଡାକି ପଚାରିଲାରୁ ସେ କହିଲା, "ଯଦୁ ବାବୁ ସକାଳବେଳା ଦୁଇ ତିନି ଥର ଲୋକ ପଠାଇଥିଲେ କଣ ଖବର ଦେଇ; କିନ୍ତୁ ସେତେବେଳେ ମା ଶୋଇଥିବାରୁ ସେ ଉଠାଇ ବିରକ୍ତ କରିବାକୁ ଇଚ୍ଛା କଲା ନାହିଁ ।" ଯେତେବେଳେ କମଳା ପଚାରିଲା ଯେ, ତା ନିଦ ଭାଙ୍ଗିଲା ଉତ୍ତାରେ ସେ କାହିଁକି ସେ କଥା ତାକୁ ଜଣାଇଲା ନାହିଁ, ଉତ୍ତରରେ ବୃଦ୍ଧର ତଳକୁ ମୁଣ୍ଡ ପୋତି କହିଲା, ସେ ଭୁଲିଗଲା କହିବାକୁ । କମଳା ବୁଝିଲା, ଉଦ୍ଧବ ମିଛ କହୁଛି ଏବଂ ଉଦ୍ଧବର ମିଛ କଥା କମଳା ଯେ ଧରିଲାଣି, ଉଦ୍ଧବ ମଧ୍ୟ ଜାଣିଲା । ଘରର ବୁଢା ବୃଦ୍ଧର ଉଦ୍ଧବ, ଯେ କାଶୀନାଥକୁ ପିଲାଟି ଦିନରୁ ଦୁଇ ହାତରେ ଧରି ମଣିଷ କରିଛି, ତାର ମିନତିପୂର୍ଣ୍ଣ ଆଖି ଦିଓଟି ତୋଳି ଯେତେବେଳେ ସେ କମଳା ଆଡ଼କୁ ଚାହିଁଲା, ସେ ଆଖିର ମୌନ ନିବେଦନ ବୁଝିବାକୁ କମଳାର ଆଉ ବାକି ରହିଲା ନାହିଁ । ବୁଝିଲା, ସ୍ୱାମୀ ସ୍ତ୍ରୀ ଉଭୟଙ୍କୁ ଉଭୟଙ୍କର ସଙ୍ଗସୁଖ ଲାଭ କରାଇବାକୁ ସେ ବୃଦ୍ଧର ପ୍ରାଣ କିପରି ବ୍ୟାକୁଳ, ଅନ୍ତତଃ ପୂରା ଗୋଟିଏ ଦିନ ସକାଶେ । ଏହି ନିଃସ୍ୱାର୍ଥ ପ୍ରଭୁଭକ୍ତି ସମ୍ମୁଖରେ ତୁଚ୍ଛ ମିଛ କହିବାର ଅପରାଧ ସେ କେବଳ

ତିରସ୍କାରର ଅଯୋଗ୍ୟ, ତାହା ନୁହେଁ, ଏହା ଅନେକାନେକ ସତ୍ୟବାଦିତାର ଧୃଷ୍ଟତା ଅପେକ୍ଷା ଶତଗୁଣରେ ଶ୍ରେୟସ୍କର । ଏଥିରେ ପ୍ରଭୁପତ୍ନୀଙ୍କୁ ନିଜ କର୍ତ୍ତବ୍ୟର ତ୍ରୁଟି ପ୍ରଦର୍ଶନ କରିବା ଅପେକ୍ଷା ନିଜକୁ ମିଥ୍ୟାବାଦୀ ସାବ୍ୟସ୍ତ କରିବାର ବଦାନ୍ୟତା ଥିଲା । ସେଥିପାଇଁ ଉତ୍ତରବାକୁ ଆଉ କିଛି ନ କହି 'ହଉ ମା'ବୋଲି କହି ବିଦାୟ କରିଦେଲା ଏବଂ ସେ ଆଉ ତାର ସ୍ୱାମୀର ସମ୍ପର୍କର ଶିଥିଳତା ଯେ ଚାକରବାକରଙ୍କ ଦୃଷ୍ଟିରେ ପଡି ସେମାନଙ୍କ ନିକଟରେ ତାକୁ କୃପାର ପାତ୍ର କରିଛି, ଏହା ଭାବି ନିଜ ଉପରେ ବିରକ୍ତ ହେଲା ।

ତହିଁ ଆର ଦିନ ସକାଳେ ସ୍ୱାମୀ କଚେରୀକୁ ନ ଯିବା ପର୍ଯ୍ୟନ୍ତ ଚୁପ୍ କରି ରହିଲା । ମନ ଭିତରେ ଚିନ୍ତାର ଯେ ତୁମୁଳ ଝଡ଼ ବହୁଥିଲା, ସେ କଥା କାହାରିକୁ ଜାଣିବାକୁ ଦେଲା ନାହିଁ । କେବଳ ଟିକେ ଆଶ୍ଚର୍ଯ୍ୟ ହେଲା ଯେ, ଏତେ ବଡ଼ କାଣ୍ଡ ସହରରେ ଘଟିଗଲା, ସ୍ୱାମୀ ନିଶ୍ଚୟ ଏ ବିଷୟ ଶୁଣିଥିବେ; କିନ୍ତୁ ସେ ମଧ୍ୟ ଏ ସମ୍ବନ୍ଧରେ ତାକୁ ପଦେ ହେଲେ କିଛି କହିଲା ନାହିଁ । ସ୍ପଷ୍ଟ ବୁଝିଲା, ସ୍ୱାମୀ ଇଚ୍ଛା କରି କିଛି କହୁ ନାହିଁ ।

ଯେ ପର୍ଯ୍ୟନ୍ତ ନା କାଶୀନାଥ କଚେରୀକୁ ବାହାରିଗଲା, ସେ ପର୍ଯ୍ୟନ୍ତ କମଳା ଚୁପ୍ କରି ରହିଲା, ସହଜ ଭାବରେ ନିଜର ସମସ୍ତ କାମ କରିଗଲା । ସ୍ୱାମୀ କଚେରୀକୁ ଗଲାରୁ, ଗାଡି ଖଣ୍ଡେ ଡାକି, ସେଥିରେ ଗଲା ସିଧା ସିଧା ଯଦୁନାଥର ହୋଟେଲକୁ । ହୋଟେଲ ଦୁଆରମୁହଁରେ ଚାକରକୁ ଦେଖି ପଚାରିଲା, "ଯଦୁବାବୁ କେମିତି ଅଛନ୍ତି ?" ଭଲ ଅଛନ୍ତି ଶୁଣି ଗଲା ଯଦୁନାଥର ରହିବା ବଖରା ପାଖକୁ । ପରଦା ଏ ପାଖରୁ ପଚାରିଲା—'ଭିତରକୁ ଯାଇପାରିବି ?'

ଯଦୁନାଥ—ନିଶ୍ଚୟ ।

କମଳା ଭିତରେ ପଶି ଯଦୁନାଥକୁ ଶଶବ୍ୟସ୍ତରେ ଶେଯରୁ ଉଠିବାକୁ ଚେଷ୍ଟା କରିବାର ଦେଖି କହିଲା—"ଆପଣଙ୍କର ବ୍ୟସ୍ତ ହେବାର କୌଣସି ପ୍ରୟୋଜନ ନାହିଁ, ବିଶେଷତଃ ଶରୀରର ଅବସ୍ଥା ଯେତେବେଳେ ଏପରି !"

ତା ପରେ ଗୋଟାଏ ଚୌକି ଟାଣି ନେଇ ଶେଯ କଡରେ ବସିଲା । ସେତେ-ବେଳେ ଆହତ ଯଦୁନାଥ ସକାଶେ ତାର ପ୍ରାଣ ବଗଳିତ ଏବଂ ଯୁଦ୍ଧରୁ ପ୍ରତ୍ୟାବୃତ୍ତ ଯୋଦ୍ଧା ପ୍ରତି ସମ୍ମାନ ପ୍ରଦର୍ଶନ କରିବାରେ ତାର ଚକ୍ଷୁ ବିସ୍ମୟ-ବିସ୍ଫାରିତ । ଯଦୁନାଥର ବାଁ ହାତର ମଣିବନ୍ଧ ଓଦାକନାରେ ଗୁଡା ହୋଇ-ଥିବାର ଦେଖି କମଳା ପଚାରିଲା, "କଅଣ ମାଡ଼ ବଡ଼ ଜୋରରେ ବସିଛି ?"

ଯଦୁନାଥ—ସେତେ଼ ଜୋରରେ ନୁହେଁ, ତେବେ ମନ୍ଦ ନୁହେଁ ।

ଏହା ହେଉଛି କହିବାର ସେହି କୌଶଳ, ଯାହା ଫଳରେ ବକ୍ତାର ମୁହଁ ଯାହା ଲଘୁ ବୋଲି ସ୍ୱୀକାର କରେ, ଶ୍ରୋତାର ମନ ତାକୁ ଗୁରୁ ବୋଲି ବୁଝେ ।

କମଳା କରୁଣାରେ ବିଗଳିତ ହୋଇ ଏକରକମ ନିଜର ଅଜ୍ଞାତ-ସାରରେ ଯଦୁନାଥର ଆହତ ହସ୍ତକୁ ନିଜ ହାତ ପାପୁଲିରେ ରଖି ଆଉଁଶିବାକୁ ଲାଗିଲା । ଯଦୁନାଥର ଅନୁଶୋଚନା ହେଲା । ଭାବିଲା, ସୁଲିଏର ଆକ୍ରମଣରୁ ଏତେ ଚଞ୍ଚଳ ପୃଷ୍ଠଭଙ୍ଗ ଦେଇ ପଳାଇ ଆସିବା ତାର ମୂର୍ଖତାର କାର୍ଯ୍ୟ ହୋଇଛି । ସାମାନ୍ୟ ଗୋଟାଏ ବେତମାଡ଼ରୁ ମୁଣ୍ଡକୁ ରକ୍ଷା କରିବାକୁ ଯାଇ ତାକୁ ହାତ ଉପରେ ଗ୍ରହଣ କରିବାରେ ଯଦି ଶୁଶ୍ରୂଷାର ଏପରି ସୁଯୋଗ, ତାହାହେଲେ ଆଉ ଦଶଟିର ପାହାର ଖାଇବା ସକାଶେ ସେ କାହିଁକି ଧୈର୍ଯ୍ୟ ଧରିପାରିଲା ନାହିଁ ।

କମଳାର ସ୍ପର୍ଶସୁଖ କିଛିକ୍ଷଣ ଭୋଗ କରିବା ପରେ ଯଦୁନାଥ କହିଲା— "ଆମର ଆଶା ଥିଲା, ଯୁଦ୍ଧର ଆରମ୍ଭବେଳେ ରଣକ୍ଷେତ୍ରରେ ଆମ୍ଭେମାନେ ଓଡ଼ିଶାର ଯୋଆନ୍ ଅଫ୍ ଆର୍କଙ୍କର ନେତୃତ୍ୱ ଲାଭ କରିବୁ ବୋଲି ।"

କମଳା—ଦେଖନ୍ତୁ, ମୁଁ ଯାହାର ଯୋଗ୍ୟ ନୁହେଁ, ଏ ପ୍ରକାର ପ୍ରଶଂସା ମୋତେ କଲେ ମୁଁ ମନେ କରେ ମୋତେ ଅପମାନ କରାହେଉଛି । ନେତୃତ୍ୱ ନ କରିପାରିଲେ ସୁଦ୍ଧା ମୋର ସାମାନ୍ୟ ଶକ୍ତି ଅନୁସାରେ ମୁଁ ଯୁଦ୍ଧକ୍ଷେତ୍ରରେ

ନିଜ ସ୍ଥାନରେ ଛିଡ଼ା ହେବାକୁ ଚେଷ୍ଟା କରୁଥାନ୍ତି । ଏଡ଼େ ଚଞ୍ଚଳ ପିକେଟିଂ ଆରମ୍ଭ ହେବ ବୋଲି ମୁଁ ଜାଣି ନ ଥିଲି । ଆପଣଙ୍କ ପଠାଇବା ଖବର ମୁଁ କାଲି ରାତି ପର୍ଯ୍ୟନ୍ତ ପାଇ ନ ଥିଲି ।

ଯଦୁନାଥ—ମୁଁ ବୁଝିପାରୁଛି, ଆପଣଙ୍କର ଅସୁବିଧା କେତେ, ଘରର କେତେ ପ୍ରତିବନ୍ଧକତା ଭିତର ଦେଇ ଆପଣଙ୍କୁ ଅଗ୍ରସର ହେବାକୁ ହେଉଛି । ବିଶେଷତଃ କାଶୀବାବୁ ଯେତେବେଳେ ଏ ସବୁର ବିରୋଧୀ, ଭାବନ୍ତି ଏ ସବୁ କେବଳ ହୁଜୁଗ୍ ।

କମଳା—ମୋର ସ୍ୱାମୀ କେବେ ହେଲେ ମୋର ପ୍ରତିବନ୍ଧକତା କରି-ନାହାନ୍ତି; ସହଯୋଗ ଅବଶ୍ୟ କରି ନାହାନ୍ତି । ହୁଜୁଗ୍ ବୋଲି କେବେ କହି ନାହାନ୍ତି । ଯଦି ବା ଅତିରିକ୍ତତାର ଦୋଷ ଦିଅନ୍ତି, ଅନ୍ତତଃ ମୋର ସ୍ୱାଧୀନ ଇଚ୍ଛାରେ ଏ ପର୍ଯ୍ୟନ୍ତ କୌଣସି ବାଧା ଦେଇ ନାହାନ୍ତି ।

ଯଦୁନାଥ—ମୋତେ କ୍ଷମା କରିବେ ମୁଁ କାଶୀବାବୁଙ୍କୁ ସମାଲୋଚନା କରୁଛି ବୋଲି । କାଶୀବାବୁ ଯେ ଆପଣଙ୍କୁ ବାଧା ଦିଅନ୍ତି ନାହିଁ, ଏଥିରେ ତାଙ୍କର ବଦାନ୍ୟତା ବା ବାହାଦୁରୀ କିଛି ନାହିଁ, ବରଂ ସତ କହିବାକୁ ଗଲେ ସ୍ୱୀକାର କରିବାକୁ ହେବ, ତାଙ୍କର ଭୀରୁତା ଏଥିରେ ପ୍ରକାଶ ପାଏ ।

କମଳା—ତା ମାନେ ?

ଯଦୁନାଥ—ଦେଖନ୍ତୁ, ମୁଁ ଆପଣଙ୍କୁ ଖୋସାମଦ କରୁ ନାହିଁ;ମାତ୍ର ମୋର ଅନ୍ତରର ଦୃଢପ୍ରତୀତି କେବଳ ଜଣାଉଛି । ଆପଣ ଯେପରି ତେଜୀ ଏବଂ ସ୍ୱାଧୀନତାପ୍ରିୟ, କାଶୀବାବୁଙ୍କର ଭୟ, ଆପଣଙ୍କର ଇଚ୍ଛାରେ ବାଧାଦେଲେ ଆପଣ କାଲେ ସମସ୍ତ ବନ୍ଧନ ଛିଣ୍ଡାଇ ବାହାରି ପଡିବେ ।

କମଳା ଯଦୁନାଥର ହାତ ଛାଡଦେଇ ଚଞ୍ଚଳ କହିଉଠିଲି—"ଆପଣ ଏମିତି କାହିଁକି କହୁଛନ୍ତି ? ମୁଁ କାହିଁକି ତାଙ୍କ ସହିତ ସମସ୍ତ ବନ୍ଧନ ଛିଣ୍ଡାଇବାକୁ ଯିବି ?"

ଯଦୁନାଥ—ବିରକ୍ତ ହେବେ ନାହିଁ । ମୁଁ ଯାହା ସତ୍ୟ ବୋଲି ବୁଝିଛି, ତାହାହିଁ କହୁଛି । ଆପଣ ଦୁଇ ଜଣଙ୍କର ଜୀବନରେ ଆଦର୍ଶର ମେଳ ନାହିଁ । ଆପଣଙ୍କର ଯେଉଁଥିରେ ଶ୍ରଦ୍ଧା, କାଶୀବାବୁଙ୍କର ସେଥିରେ ବିରକ୍ତି ନ ହେଲେ ଅନ୍ତତଃ ସେଥିପ୍ରତି ସେ ଉଦାସୀନ । ଆପଣଙ୍କର ତ ଅଉ ସେ ମାନ୍ଧାତା ଅମଳର ଅନ୍ଧବିଶ୍ୱାସ ନାହିଁ ଯେ, ବିବାହର ଅନୁଷ୍ଠାନରେ ଧର୍ମନାମକ କଳ୍ପନା-ପ୍ରସୂତ ପଦାର୍ଥର ବନ୍ଧନ ଦେଖିବେ । ଏ ଜ୍ଞାନବିଜ୍ଞାନର ଯୁଗରେ ବିବାହ ହେଉଛି କର୍ମର ବନ୍ଧନ । ଯେଉଁ ବିବାହରେ କର୍ମର ସହଯୋଗ ନାହିଁ, ସେ ବିବାହ ଦୁର୍ବହ ଏବଂ ନିରର୍ଥକ ବନ୍ଧନ । ଆପଣ ତ ରୁଷିଆର ଅନେକ ଖବର ପଢନ୍ତି । ସେଠି ସଭ୍ୟଜାତି ଏପରି ଉନ୍ନତ ହେଲାଣି ଯେ, ଅନୁଷ୍ଠାନ ସ୍ୱରୂପେ ବିବାହ ସେଠୁ ବିଦାୟ ନେବାକୁ ବସିଲାଣି । ସେଠି ବିବାହର ଅର୍ଥ ହେଉଛି ନର ଓ ନାରୀ ମଧ୍ୟରେ ଅବାଧ ମିଳନ ଇଚ୍ଛା । ଅବଶ୍ୟ ଏହି ଇଚ୍ଛାସମ୍ଭୂତ ସନ୍ତାନସନ୍ତତିଙ୍କର ରକ୍ଷଣାବେକ୍ଷଣ ସକାଶେ ରାଷ୍ଟ୍ରୀୟ ପ୍ରୟୋଜନୀୟତା ଦୃଷ୍ଟିରୁ ଉଭୟଙ୍କର ଯାହା କିଛି ଦାୟିତ୍ୱ । ବହୁଶତାବ୍ଦୀ ଧରି ମନ ଉପରେ ବିବାହ ସମ୍ବନ୍ଧରେ ଯେଉଁ ସାମାଜିକ ସଂସ୍କାର ଜମି ରହିଛି, ତାକୁ ଆଡ଼େଇ ଦେଇ ଯଦି ଦେଖିବ, ତାହାହେଲେ ବୁଝିପାରିବ, ନର ଓ ନାରୀ ଯେ ଉଭୟେ ପରସ୍ପର ସହିତ ମିଳିତ ହେବାକୁ ଇଚ୍ଛା କରନ୍ତି, ତାହା ପ୍ରାକୃତିକ, ଅତଏବ ଗର୍ହିତ ସେଥିରେ କିଛି ନାହିଁ । ଯେତେ ଧର୍ମର ଘଟାଟୋପ ଦେଇ ଢାଙ୍କ, ମାନିବାକୁ ହେବ, ବିବାହ ହେଉଛି ନର ଓ ନାରୀ ମଧ୍ୟରେ ଆକସ୍ମିକ ମିଳନ । ତା ଆମ ସମାଜରେ ଯେପରି, ରୁଷିଅରେ ମଧ୍ୟ ସେହିପରି । ତେବେ ତଫାତ୍ ଏତିକି, ଏଠି ସେ ମିଳନ ଚିରନ୍ତନ ସକାଶେ ଗୋଡ଼ରେ ବେଡ଼ି, ସେଠି ମିଳନର ଇଚ୍ଛା ଅବସାନ ବା ଅବସନ୍ନ ହେଲେ ସମ୍ପର୍କ ତୁଟେ, ମନରଚଢେଇର ଡେଣା-ପର କାଟି ତାକୁ ପିଞ୍ଜରା ଭିତରେ ପୂରାଇ ଦିଆହୁଏ ନାହିଁ, ମୁକ୍ତ ଆକାଶତଳେ ଅବାଧରେ ଚରିବୁଲିବାର ଅବକାଶ ତାକୁ ଦିଆଯାଏ ।

ତା ପରେ ଶିକାର ଉପରକୁ ସିଂହ ଯେପରି ଝାମ୍ପିପଡେ, ଯଦୁନାଥ ଏକ ଲମ୍ଫରେ ବିଛଣା ଛାଡି ଆସି କମଳା ପାଖରେ ଛିଡାହେଲା ଏବଂ ବଜ୍ରମୁଷ୍ଟିରେ

ତାର ହାତ ଧରିଲା । କମଳା ତଉକ୍ତ ହାତ ଛଡ଼ାହେବା ମାତ୍ରେ ତାକୁ ବାହୁର ନାଗପାଶରେ ବାନ୍ଧି ନିଜଆଡକୁ ଭିଡ଼ି ଆଣି ତା କାନ ପାଖରେ ସଁ ସଁ ହୋଇ କହିଲା, "କମଳା, ସ୍ତ୍ରିବର୍ଷ ହେଲା ଯେ ଇଚ୍ଛାକୁ ମନ ତଳେ ଚାପି ରଖିଛି, "ଆଜ ମୋର ସେହି ଇଚ୍ଛା ପୂର୍ଣ୍ଣକର । ମୋର ଜନ୍ମଜୀବନ ସଫଳ କର । ତାର ଉଷ୍ଣ ନିଃଶ୍ୱାସ ଏବଂ ଏକାଧିକ ଚୁମ୍ବନରେ କମଳାକୁ ବ୍ୟତିବ୍ୟସ୍ତ କରିପକାଇଲା । ଉଦ୍ଧାରର ଅନ୍ୟ ଉପାୟ ନ ଦେଖି କମଳା ତାର ସମସ୍ତ ଶକ୍ତି ସଂଗ୍ରହ କରି ଯଦୁନାଥର ଅନାବୃତ ମଣିବନ୍ଧ ଉପରେ ଚାପଦେଲା ଏବଂ ଆଲିଙ୍ଗନ ପାଶ ଶିଥିଳ ହେବାମାତ୍ରେ ଏକ ନିଃଶ୍ୱାସରେ ସେଠୁ ପଳାଇଆସି ହୋଟେଲ ଦୁଆରମୁହଁରେ ପହଞ୍ଚିଲା । ତା ପରେ ଦେହରେ ଲୁଗାପଟା ଯଥାସମ୍ଭବ ସଜାଡି ଦାଣ୍ଡକୁ ବାହାରି ପଡିଲା ଓ ଖଣ୍ଡେ ଗାଡି କରି ସିଧା ଘରକୁ ଫେରି-ଆସିଲା ।

ଉଦୁଉଦିଆ ଦିପହର । ଝାଳରେ ଲୁଗାପଟା ବୁଡି ଯାଇଛି, ମୁଣ୍ଡ ଭିତରେ ନିଆଁ ଜଳୁଛି । ପ୍ରକୃତିସ୍ଥ ହୋଇ କୌଣସି ବିଷୟ ଭାବିପାରୁ ନାହିଁ । କେବଳ ବାରମ୍ବାର ଲୁଗାକାନିରେ ମୁହଁର ସେହି ଅଂଶ ପୋଛୁଛି, ଯେଉଁଠି ଯଦୁନାଥ ତାକୁ ଚୁମ୍ବନ ଦେଇଥିଲା; ତଥାପି ମନେ ହେଉଛି, ଯେପରି ସେହି ଅଶୁଚ ସ୍ପର୍ଶର ଦାଗ ଲିଭି ନାହିଁ । ଘୃଣାରେ ସମସ୍ତ ଶରୀରମନ ଛି ଛି କରିଉଠୁଛି । ଶରୀର ଆଉ ମନର ଏପରି ଅବସ୍ଥାରେ ଘର ଭିତରେ ପଶି ତାର ସ୍ୱାମୀର କି ଅବା ନିଜ କୋଠରୀକୁ କଳୁଷିତ କରିବାକୁ ତାର ସାହସ ହେଲା ନାହିଁ । ତାର ମନେ ହେଲା, ଯେପରି ସେ ପାଇଖାନା ଅପେକ୍ଷା ଅଧିକ ଅଧମ ସ୍ଥାନରୁ ଫେରି ଆସିଛି । ସେଥିପାଇଁ ଗାଧୁଆ ଘରକୁ ଯାଇ ପିନ୍ଧିଥିବା ସମସ୍ତ ଲୁଗାପଟା ଛାଡି ଉତ୍ତମରୂପେ ଗାଧୋଇ ପାଧୋଇ ପରିଷ୍କାର ଲୁଗା ପିନ୍ଧି ଆସି ଖଟ ଉପରେ ମୁହଁ ମାଡି ପଡିଲା । ଯଦିବା ଦେହ କିଛିଟା ଥଣ୍ଡା ଲାଗିଲା, ତଥାପି ଅଗ୍ନି ମୁଣ୍ଡ ଭିତରେ ଧୂ ଧୂ ହୋଇ ଜଳୁଥିଲା । କେତେବେଳେ ସେ ଯଦୁନାଥର ଆହତ ହେବା ଏବଂ ପୀଡ଼ାର ଅଭିନୟ ସ୍ମରଣ କରି ମନେ ମନେ ହସେ; କାରଣ

ତାର ଆଲିଙ୍ଗନରୁ ମୁକ୍ତି ପାଇବା ସକାଶେ ନିଜର ଯେଉଁ ପରିମାଣ ଶକ୍ତି ପ୍ରୟୋଗ କରିଥିଲା, ତହିଁରେ ଯଦୁନାଥର ଆଘାତ ଏବଂ ପୀଡ଼ାର ପରିମାଣ ସେ କଳ୍ପି ନେଇଥିଲା । କେତେବେଳେ ପୁଣି ଭାବେ, ମାନବ ପ୍ରକୃତି ମଧ୍ୟରେ ଏ କି ବିଭ୍ରାଟ, ଏ କି ବିଷଦୃଶତା । ସ୍ୱାମୀର ଚରିତ୍ର ଦେବୋପମ; କିନ୍ତୁ ଦେଶସେବା କାର୍ଯ୍ୟ ବା ଅସହଯୋଗ ଆନ୍ଦୋଳନ ପ୍ରତି ଆଗ୍ରହ ନାହିଁ । ଯଦୁନାଥ ଚରିତ୍ର ହିସାବରେ ନରପିଶାଚ, ଅଥଚ ସମାଜସଂସ୍କାର ଏବଂ ଶାସନସଂସ୍କାର ଆନ୍ଦୋଳନରେ ସେ ଯୋଗଦିଏ । ନାନା ଚିନ୍ତାଭାବନା ପରେ ସ୍ଥିର କଲା, ବର୍ତ୍ତମାନ ଅବସ୍ଥାରେ ନିଜେ ଇଚ୍ଛା କରି ସ୍ୱାମୀକୁ ମୁହଁ ଦେଖାଇ ପାରିବ ନାହିଁ । ତା ଅପେକ୍ଷା ବରଂ ନିଜକୁ ଆହୁତି ଦେବ ସତ୍ୟାଗ୍ରହର ଯଜ୍ଞାନଳରେ ଏବଂ ତାରି ଭିତର ଦେଇ କିଛି ଦିନପାଇଁ କାରାବାସ ବରଣ କରିବ । ହୁଏ ତ କାରାବାସର ଦୁଃଖରେ ତାର ମନର ଗ୍ଲାନିର କିଞ୍ଚିତ୍ ପ୍ରାୟଶ୍ଚିତ୍ତ ହେବ ଏବଂ କାରାବାସର ନିର୍ଜନତାରେ ଅବକାଶ ପାଇବ ନିଜ ଜୀବନର ଭବିଷ୍ୟତ୍ ଗତି ନିରୂପଣ କରିବାକୁ ।

ଯେତେବେଳେ ବିଛଣାରୁ ଉଠିଲା, ସେତେବେଳକୁ ପ୍ରାୟ ଦିନ ଚାରିଟା । ସ୍ୱାମୀର ଫଟୋ ଆଡ଼କୁ କିଛିକ୍ଷଣ ନିର୍ନିମେଷ ନୟନରେ ଅନାଇ ଝଡ଼ ପରି ବାହାରିଗଲା ଦାଣ୍ଡ ବାରଣ୍ଡାକୁ । ତା ପରେ ଧୀରେ ଧୀରେ ଚାଲିଲା ବଜାରର ସେହି ଆଡକୁ, ଯେଉଁଠି ପିକେଟିଂ ଆରମ୍ଭ ହୋଇଥିଲା । ଦେଖିଲା, ପୁଲିସର ଧର-ପକଡରେ ପିକେଟିଂ ଢିଲା ପଡୁଛି । ଲୋକ ଗହଳର ମଝିକୁ ଯାଇ ବଡ ପାଟିରେ ଜାତୀୟ ସଙ୍ଗୀତ ଗାଇବାକୁ ଆରମ୍ଭ କଲା । ଜନତାର ଭିଡ଼ ଚାରିଆଡ ପଙ୍ଗପାଳ ପରି ମାଡି ଆସିଲା । ଦେଖଣାହାରୀ ମୁଦ୍ଧା ସେ ଉତ୍ତେଜନାରେ ସତ୍ୟା-ଗ୍ରହରେ ଯୋଗଦେଲେ । ପୁଲିସ ଦେଖିଲା, କମଳାକୁ ଗିରଫଦାର ନ କଲେ ରକ୍ଷା ନାହିଁ । ଏହିପରି କମଳା ଆସି ପହଞ୍ଚିଲା ହାଜତରେ ।

କାଶୀନାଥ ଯେତେବେଳେ କଚେରୀର କାମ ସାରି ଘରକୁ ବାହାରୁଛି, ଉଦ୍ଧବା ଆସି କମଳାର ହାଜତ ଯିବା ସମ୍ବାଦ ଦେଲା । କାଶୀନାଥ ମୁଣ୍ଡରେ

# ସାମୟିକ

ଆକାଶ ଭାଙ୍ଗିପଡ଼ିଲା । ଦଶ ପନ୍ଦର ମିନଟ ପର୍ଯ୍ୟନ୍ତ ସେ ବାହ୍ୟଜ୍ଞାନ ବିରହିତ ହୋଇ, ବାର ଲାଇବ୍ରେରିରେ ବସିପଡ଼ିଲା । ଉଚ୍ଚବାର ଅପରାହ୍ଣ ଶେଷ ଅଧ୍ୟାୟରେ ଉଠି କମଳାକୁ ଜାମିନରେ ଖଲାସ କରିବା ପାଇଁ କାଗଜପତ୍ର ଠିକ୍ କରି ତାର ଦସ୍ତଖତ୍ କରିବାକୁ ହାଜତକୁ ଗଲା । କାଶୀନାଥକୁ ଦେଖି କମଳା ମୁଣ୍ଡ ପୋତି ଚୁପ୍‌କରି ରହିଲା । କାଶୀନାଥ ଯେତେ ବୁଝାଇଲା, ଯେତେ ଅନୁନୟ ବିନୟ କଲା ଦସ୍ତଖତ୍ କରିବାକୁ, କମଳା ମଙ୍ଗିଲା ନାହିଁ, କଥା ନ କହି କେବଳ ମୁଣ୍ଡ ଠୁଙ୍କାଇ ଅସମ୍ମତି ଜଣାଇଲା । ରାତି ନଅଟାବେଳେ କାଶୀନାଥ ବିଫଳ ମନୋ-ରଥ ହୋଇ ଘରକୁ ଫେରିଲା । ସେ ରାତି ଘରେ ସମସ୍ତେ ଉପବାସ ରହିଲେ । କାଶୀନାଥ ରାତି କାଟିଲା କେବଳ ଯନ୍ତ୍ରଣା ଉପରେ ଏକାକ ସେକାଡ ହୋଇ । ତହିଁ ଆରଦିନ ମକଦ୍ଦମା । ହାକିମ ସହିତ ସାକ୍ଷାତ୍ କରି କାଶୀନାଥ ବୁଝିଲା, ଯଦି କମଳା ଅନ୍ତତଃ ମୌଖିକ ପ୍ରତିଶ୍ରୁତି ଦେବ ଯେ, ସେ ଆଉ ସତ୍ୟାଗ୍ରହରେ ଯୋଗ ଦେବ ନାହିଁ, ତାହା ହେଲେ ତାକୁ ଖଲାସ ଦେବାରେ କୌଣସି ଆପତ୍ତି ରହିବ ନାହିଁ; ନଚେତ୍ ଏ ଅପରାଧର କାରାବାସ ଦଣ୍ଡ ଅନିବାର୍ଯ୍ୟ । କାଶୀନାଥ କମଳାକୁ ଯେତେ ବୁଝାଇଲା ଏ ପାଗଳାମି ଛାଡ଼ିବାକୁ, ତାର ସେ ସବୁ ଚେଷ୍ଟା ବ୍ୟର୍ଥ ହେଲା । ଶେଷକୁ ତାର ଅନ୍ତଃସତ୍ତ୍ୱା ଥିବା ଅବସ୍ଥା ତାକୁ ସ୍ମରଣ କରାଇ କହିଲା, ଅନ୍ତତଃ ଅନାଗତ ସନ୍ତାନ ସକାଶେ ଏଥିରୁ ସେ ରହିତ ହେଉ । ସେଥିରେ ମଧ୍ୟ କମଳା ଟଳିଲା ନାହିଁ । ମକଦ୍ଦମାର ରାୟ ବାହାରିଲା, କମଳାକୁ ଦଶମାସ ଜେଲ । ଜେଲଖାନାକୁ ଯିବା ପାଇଁ ଗାଡ଼ିରେ ଚଢ଼ିବା ପୂର୍ବରୁ କମଳା ସ୍ୱାମୀକୁ କଡକୁ ଡାକି କାନରେ କହିଲା, 'ତୁମେ କିଛି ଚିନ୍ତା କର ନାହିଁ । ତୁମର ଯେଉଁ ଧନ ତୁମେ ମୋଠି ଗଚ୍ଛିତ କରିଛ, ତାକୁ ମୁଁ ଯତ୍ନରେ ସମ୍ଭାଳି ରଖିବି; ଆଉ ଠିକ ସମୟରେ ଆଣି ତୁମ ପାଖରେ ପହଞ୍ଚାଇବି ।' ତା ପରେ ଗାଡ଼ିରେ ଚଢ଼ି କମଳା ଗଲା ଜେଲଖାନାକୁ ।



# ବଡଲୋକି

[ ଏକ ]

ନଅଙ୍କ ଦୁର୍ଭିକ୍ଷ ସମୟରେ ପାଦ୍ରୀସାହେବମାନେ ଯେ କେବଳ ଅନାଥାଶ୍ରମ ଖୋଲି ଅନାଥ ପିଲାମାନଙ୍କୁ ପ୍ରତିପାଳନ କରିଥିଲେ, ତାହା ନୁହେଁ; ସେମାନେ ବଢିଗଲାରୁ ସେମାନଙ୍କର ଜୀବିକା ଉପାର୍ଜନର ଉପାୟ ମଧ୍ୟ କରିଥିଲେ । ଏହି ପିଲାଙ୍କ ମଧ୍ୟରୁ ଯେଉଁମାନେ ଭଲ ପଢାଶୁଣା କରି ନ ପାରିଲେ ସେମାନଙ୍କ ସକାଶେ ମଣ୍ଡାପଡ଼ା, ମିନ୍‌ସିନ୍‌ପାଟଣା, ପିପିଲି, ବାଇଲପଡ଼ା, ଖଣ୍ଡିତର, ବନମାଳୀପୁର ଓ ଜମ୍ବୁ ହାପ୍ ପାଟଣା ପ୍ରଭୃତି ସ୍ଥାନରେ ଜମି ନେଇ ସେମାନଙ୍କୁ ସେଥିରେ ରଇତ ବସାଇ କୃଷିକାମରେ ଲଗାଇ ଦେଲେ । ଜମ୍ବୁର କ୍ରିଶ୍ଚେଇ ପଧାନ ପାଦ୍ରୀଙ୍କର ଏହିପରି ରଇତ ମଧ୍ୟରୁ ଜଣେ ।

ଯେତେବେଳେ ସୁଷବାଷର ଦଶବାର ବର୍ଷ ଭିତରେ କ୍ରିଶ୍ଚେଇ ପଧାନର ନାଆସ୍ଥଳିଆ ମାଟିଘର ଭଙ୍ଗା ହୋଇ ପକ୍‌କା କୋଠା ତିଆରି ହେଲା, ସୁଷ ଜମି ସାତ ଆଠ ମାଣରୁ ସାତ ଆଠ ବାଟି ହେଲା, ଛେଳି, ମେଣ୍ଢା, ଗୋରୁ, ବଳଦ, ମଇଁଷି, ପୋଢୁଅ ଶଏ ଦୁଇଶ ହେଲା, ସେତେବେଳେ କ୍ରିଶ୍ଚେଇ ପଧାନର ଏହି ସମ୍ପତ୍ତିବୃଦ୍ଧି ସମ୍ବନ୍ଧରେ ଲୋକଙ୍କ ଭିତରେ ନାନାପ୍ରକାର ମତାମତ ପ୍ରଚଳିତ ହେବାକୁ ଲାଗିଲା । ଅବଶ୍ୟ କ୍ରିଶ୍ଚେଇ ପଧାନ ଯେ ଏହି ମତାମତ ପ୍ରଚାର କରିବାରେ ସହାୟତା କରି ନ ଥିଲା, ଏମନ୍ତ ନୁହେଁ । କାହାର କାହାର ମତରେ କ୍ରିଶ୍ଚେଇ ପଧାନର ସ୍ତ୍ରୀ ସକାଳୁ ଉଠି ଗୋରୁ ଗୁହାଳ ସଫା କରିବାକୁ ଯାଇ

ଦେଖିଲ, ଯଖଙ୍କୁ ଗୋରୁମାନେ ପାଦରେ ଦଳି ସୁନାମୁଣ୍ଡା ସବୁ ଗୁହାଳସାକ ଛତରେଇ ପକେଇଛନ୍ତି । ଯଖର ଧନ ପାଇବାରୁ ତାହାର ବଳନମୟରେ କିଛି ଦିନପରେ ଏକ ମାତ୍ର ପୁତକୁ ହରାଇବାକୁ ହୋଇଥିଲ । ଆଉ କାହାର କାହାର ମତରେ କଣେଇ ପଧାନର ବଲଡଳକୁ ଯେଉଁ ଆମ୍ବଗଛର ଶିଅ ଓହଳିଥିଲ, ତାର ତଳେ ଗରାରେ ସୁନା ପୋତା ହୋଇଥିବା ସମ୍ବାଦ ଯଖ ତାଙ୍କୁ ସ୍ୱପ୍ନରେ ଦେଇଥିଲ । ତା ତକ୍ରୁ କଣେଇ ପଧାନ ଗୁପ୍ତ ଧନ ପାଇଲ; କିନ୍ତୁ ତାର ମୂଲ୍ୟ ସ୍ୱରୂପ ଯଖ ପୁଅର ଜୀବନ ନେଲ । ଅସଲ କଥାଟା ହେଉଛି, ଯେତେବେଳେ ଜମ୍ବୁ ନିକଟରେ ଥିବା ହୁକିଟୋଲ ଟାପୁରେ ସମୁଦ୍ରର ଲୁଣି-ଜୁଆର ମାଡ଼ିଗଲ ଓ ତାର ଫଳରେ ହୁକିଟୋଲରେ ଲୋକେ ବୁଡ଼ିମଲେ, ପାଣି ଛାଡ଼ିଲରୁ ସଦରରୁ ଲୋକ ଯାଇ ପହଞ୍ଚିବା ଆଗରୁ ହୁକିଟୋଲର ଘରମାନଙ୍କରେ ଯାହା କିଛି ଟଙ୍କା ପଇସା ଥିଲ, କଣେଇ ପଧାନ ପ୍ରଥମେ ଯାଇ ନେଇ ଆସିଲ । ଅର୍ଥଲାଭର କିଛି ଦିନ ପରେ ତାର ଦୁର୍ଭାଗ୍ୟରୁ ହେଉ ଅବା ସୌଭାଗ୍ୟରୁ ହେଉ, ଗୋଟିକ ପୁଅ ଯେତେବେଳେ ମରିଗଲ, ଜନଶ୍ରୁତି ଅର୍ଥଲାଭ ଓ ପୁଅର ମୃତ୍ୟୁ ମଧ୍ୟରେ କାର୍ଯ୍ୟକାରଣର ସମ୍ବନ୍ଧ ସ୍ଥାପନ କରି ଅର୍ଥଲାଭର ପ୍ରକୃତ କାରଣ ଆଡୁ ଲୋକ ସାଧାରଣ ଉଠାଇ ନେଲ ।

କଣେଇ ପଧାନର କଟକ ସୁତାହାଟରେ ଗୋଟିଏ ଏକତାଲ ପକ୍‌କାଘର । ଘରଟି ଭଡ଼ା ଲଗେ । ଘରର ତତ୍ତ୍ୱାବଧାନର ଭାର ବତଭାଇ ବାଗୋଇ ପଧାନର ପୁଅ ସୁତାହାଟ ନିବାସୀ ମିନକ୍ଷୀ ପଧାନଙ୍କ ହାତରେ । ମିନକ୍ଷୀ ପଧାନ କଟକ କଲଟେରିରେ କିରାଣୀ । ବୟସ ପଗ୍ୱଶ, ସେଥିରେ ପୁଣି ଷୋଳପଣ ସାହେବିଆନା କରିବାକୁ ଇଚ୍ଛା । ପ୍ୟାଣ୍ଟକୋଟ ଘରେ ବାହାରେ ସବୁଆଡ଼େ ସବୁବେଳେ ପିନ୍ଧନ୍ତି । ମାଟିଘରେ ରହନ୍ତୁ ପଛେ, ତାଙ୍କୁ ଚୂନ ସଫେଦ କରାନ୍ତି, ପଖାଳ ଭାତ ଶୁଖୁଆ ପୋଡ଼ା ଖାଉନ୍ତୁ ପଛେ, ତାଙ୍କୁ ମେଜ ଉପରେ କଣ୍ଟା ଚାମୁଚରେ ଖାଆନ୍ତି । ରବିବାର ଉପର ଓଳି ଓଡ଼ିଆ ଗୀର୍ଜାକୁ ଯିବାର ଅବହେଳା ହେବ ପଛକେ; କିନ୍ତୁ ସଞ୍ଜବେଳର ଇଂରେଜ ଗୀର୍ଜାକୁ ସ୍ୱତମତ ଯାଆନ୍ତି । ତାଙ୍କ ଚରିତ୍ରର ଏତକ ଛାଡ଼ିଦେଲେ ବାକି ସବୁ

ବୟସ୍ୟରେ ଲୋକଟି ଭଲ । ସଂସାରରେ ସ୍ତ୍ରୀ ବ୍ୟତୀତ କେହି ନାହିଁ, ନିଃସନ୍ତାନ । ମିଶନ ଅନାଥାଶ୍ରମରୁ କେତେ ବର୍ଷ ହେଲା ଗୋଟିଏ ସ୍ତ୍ରୀ ପିଲା ଆଣି ନିଜ ଘରେ ରଖିଛନ୍ତି । ତା’ ନାଁ କାମିନୀ । ସେ ବୁଢାବୁଢୀଙ୍କର ସବୁ ଧନ୍ଦା ବୁଝେ ।

ଦାଦ କଣେଇ ପଧାନ ନିଜ ଅନ୍ତିମ ଶଯ୍ୟାରେ ଥାଇ ଦେଖିବ ବୋଲି ପୁଅବୁ ପୁଅବୋହୂକୁ ଜମ୍ଭୁକୁ ଡ଼କାଇ ନେଇଥିଲା । ମିନଶି ପଧାନଙ୍କ ହାତରେ ସମସ୍ତ ସମ୍ପତ୍ତି ଦେଇ ଦାଦ ସଂସାରରୁ ବିଦାୟ ନେଲା ।

[ ଦୁଇ ]

ଜମ୍ଭୁ ଛାଡ଼ି କେନ୍ଦ୍ରାପଡ଼ାକୁ ଆସିବା ସମୟରେ ବୁଢାବୁଢୀ ନୀରବରେ ଅତୀତ ଜୀବନ କଥା ଭାବୁଥିଲେ । ସ୍ୱଭିମତ ବଡ଼ଲୋକ କାଇଦାରେ ଚଳିବାର ଖୋଲପଣ ଇଚ୍ଛା ଥିଲେ ସୁଦ୍ଧା ଅର୍ଥାଭାବ ଏ ପର୍ଯ୍ୟନ୍ତ ତାହା କରାଇ ଦେଇ ନ ଥିଲା । ବର୍ତ୍ତମାନ ଦାଦଙ୍କ କୃପାରୁ ଆଉ ସେ ପ୍ରତିବନ୍ଧକ ନାହିଁ । ଜୀବନର ସମସ୍ତ ଦିନ ସୁଖସୂର୍ଯ୍ୟର ଅନାଚ୍ଛାଦିତ ମୁଖ କ୍ୱଚିତ୍ ଦେଖିଛନ୍ତି; ସେଥିପାଇଁ ସନ୍ଧ୍ୟାର ଅନ୍ଧକାର ଯେତେବେଳେ ମାଡ଼ିଆସୁଛି, ସ୍ଥିର କଲେ ଏ ଅନ୍ଧକାରକୁ ଯେ କୌଣସି ଉପାୟରେ ଆଲୋକିତ କରିବେ—ସେ ଆଲୋକ ଯେତେ କୃତ୍ରିମ ହେଉ ନା କାହିଁକି ।

କେନ୍ଦ୍ରାପଡ଼ାରେ ଆସି ‘ଅଗ୍ନିବୋଟ’ ଧରିଲେ । ଅଗ୍ନିବୋଟରେ କଟକକୁ ଫେରିଆସିବାବେଳେ ମିନଶି ପଧାନ ଓ ତାଙ୍କର ସ୍ତ୍ରୀ କ୍ୟାବିନ୍‌ରେ ଏକା; ସେଥିପାଇଁ ମନର ଭାବ ପରସ୍ପର ପାଖରୁ ଗୋପନ କରିବାର କୌଣସି କାରଣ ନ ଥିଲା । ପଧାନେ ସ୍ତ୍ରୀଙ୍କ ପିଠିରେ ହାତ ବୁଲେଇ କହିଲେ, “ବୁଢୀ, ଏହାର ମାନେ କଣ ବୁଝିପାରୁଛ ?”

ମାନେ ଯାହା କିଛି ହେଉନା କାହିଁକି, ସେମାନେ ସ୍ଥିର କଲେ ଏହାର ମାନେ କାମିନୀକୁ ବିଦାୟ ଦେବା । କାମିନୀ ନିତାନ୍ତ ବିହିଘସା ହୋଇ-

ଗଲଣି, ଚାକର ମୁନିବର ବ୍ୟବଧାନ ରଖି କାମ କରୁ ନାହିଁ । ତାକୁ ରଖିଲେ ସ୍ୱଚ୍ଛନ୍ଦରେ ଷୋଳପଣ ବାବୁଆନା କରିହେବ ନାହିଁ । ସେ ସେମାନଙ୍କର ଅତୀତ ସହିତ ଅତି ଅନୁଚିତ ଭାବରେ ପରିଚିତ । ଅତଏବ ତାକୁ ବର୍ତ୍ତମାନର ପରିବର୍ତ୍ତିତ ଅବସ୍ଥାର ଅନୁରୂପ କରିବା ଅପେକ୍ଷା ମିଶନ ଅନାଥାଶ୍ରମକୁ ତାର ପ୍ରତ୍ୟାବର୍ତ୍ତିତ ହେବାହିଁ ଅଧିକ ସହଜସାଧ । ବିଦାୟ ଅନେକ ଦିନ ଆଗରୁ ଦେବା ଉଚିତ ଥିଲା । କାମିନୀର ମନ ବଢ଼ିଗଲାଣି, ସାହସ ବି ବଢ଼ିଗଲାଣି । ଅବଶ୍ୟ ତାକୁ ଯଦି ତା ଜାଗାରେ ରଖି କାମ କରାଇପାରନ୍ତେ—କିନ୍ତୁ ତା ତ କରିହେବ ନାହିଁ ? ବେଶି ନାହିଁ, ମାସେକ ତଳେ ଯେତେବେଳେ ହେମ ଡାକ୍ତରାଣୀ ଘରକୁ ଆସିଥିଲା, କହିଲା,"ତୁମେ କେମିତି ସେ ଟୋକୀଟାକୁ ଉପରେ ପଡ଼ି ଆମ କଥାରେ କଥା କହିବାକୁ ଛାଡ଼ିଦେଉଛ ? ମୁଁ ମୋ ଚାକରକୁ ଚାକର ପରି ରଖେ ।"

ଯେତେବେଳେ ବୋଟରୁ ବାହାରି ଯୋଡ଼ାଏ ଘୋଡ଼ାଗାଡ଼ିରେ ଚଢ଼ିଲେ,ସେତେବେଳେ ବୁଢ଼ୀ କହିଲେ,''ଦେଖ,ଯେମିତିପାରି ସେମିତି କାମିନୀକୁ ବିଦାୟ ଦେବାକୁ ହେବ ।'' ତା' ପରେ ଗାଡ଼ିରେ ବସି ବୁଢ଼ାବୁଢ଼ୀ ଆଖି ବୁଜିଦେଇ ଭବିଷ୍ୟତକୁ ଦେଖିବାକୁ ଲାଗିଲେ । ଦେଖିଲେ, ସେମାନେ କେମିତି ସୂତାହାଟର ପକ୍କାଘରକୁ ଉଠି ଆସିଛନ୍ତି, କେମିତି ଚାକରବାକର ବାଡ଼ି ବଗିଚା ଘରଦୁଆର ସଫା ସୁତୁରା କରି ରଖିଛନ୍ତି, କେମିତି ପଧାନେ ଆରାମ-ଚଉକିରେ ଆଉଜି ପଡ଼ି ଚୁଙ୍ଗିରେ ଧୂଆଁ ଖାଉଛନ୍ତି, ଚାକର ଚାକରାଣୀ ଆଜ୍ଞା ଅବଧାନ କରୁଛନ୍ତି । କାମିନୀର ମିଳାମିଶା ହାବ ଭାବ ଏ ଦୃଶ୍ୟ ସହିତ ଖାପ୍ ଖାଇଲା ନାହିଁ । ଯେତେବେଳେ ଗାଡ଼ି ସଡ଼କ ଛାଡ଼ି ସାହି ଭିତରେ ପଶିଲା, ସେମାନଙ୍କର ମନେ ହେଲା, ଯେପରି ସେ ସାହିରେ ସେମାନେ ପ୍ରଥମ କରି ପଶୁଛନ୍ତି । ଦୁଇପାଖର ଚାଳଘର ସବୁ କେମିତି ଏକା ରକମକିଆ, କେମିତି ଅପରିଷ୍କାର ବୋଧ ହେଲା । ସେମାନଙ୍କର ଉଚ୍ଚ ଧାରଣା ସବୁ ଚନ୍ଦ୍ରରାଜ୍ୟର ଏତେ ଉଚ୍ଚକୁ ସେମାନଙ୍କୁ ନେଇ ଯାଇଥିଲା ଯେ, ଆଜି ନିଜ ସାହିର ଓ ପଡ଼ା-

## ବଡ଼ଲୋକ

ପଡୋଶୀଙ୍କର ଘରସବୁ ଅତି କ୍ଷୁଦ୍ର, ଦେଖାଗଲା । ଠିକ୍ କି ସେମାନଙ୍କୁ ଆଉ ଗୋଟିଏ ଜଗତକୁ ଉଠାଇ ନେଇଥିଲା । ଏଣିକି ପରିବର୍ତ୍ତିତ ଅବସ୍ଥାର ଅନୁରୂପ ଭଦ୍ରତା ଓ ଆଦବ କାଇଦା ସହିତ ଜୀବନ ଯାପନ କରିବାକୁ ହେବ । କିନ୍ତୁ ସେମାନଙ୍କର ମନଟା ନିତାନ୍ତ ସାଦାସିଧା ଥିବାରୁ ଏହି ପରିବର୍ତ୍ତିତ ଅବସ୍ଥା କଥା ଭାବିଲାବେଳକୁ ଅନ୍ୟ କୌଣସି ଉତ୍କଟ ପରିବର୍ତ୍ତନ ବା ହଠାତ୍ ବାବୁ-ପଣିଆ ମନରେ ନ ଆସି କେବଳ କାମିନୀକୁ ଡକିବା କଥା ବାରମ୍ବାର ମନରେ ପଡ଼ିଲା । ଗାଡ଼ିରୁ ଓହ୍ଲାଇ ଫାଟକ ପିଟାଇ ଗଲାବେଳକୁ ବୁଢ଼ୀ କହିଲେ, "ଦେଖ, ତାକୁ ଆଉ ସେ ସୁଆଗିଆ କାମୁ, କାମି, କାମିଲୋ ବୋଲି ଡ଼ାକିବ ନାହିଁ । ତାର ପୂରା ନାଁ ଧରି ଡ଼ାକିବ ।"

ପଧାନେ ପଚାରିଲେ, "ତୁମେ କଣ ଏହିକ୍ଷଣି ତାକୁ ଏ ସବୁ କଥା କହିବ ?" ବୁଢ଼ୀ କହିଲେ, "ମୁଁ ଅଳ୍ପ ଅଳ୍ପକରି ତା କାନରେ ପକାଇଦେବି । ସଞ୍ଜ ପୂର୍ବରୁ କିନ୍ତୁ ତାକୁ ସବୁ କଥା ଶୁଣାଇ ଦେବି ।" ପଧାନେ ପଚାରିଲେ, "ମୋତେ କଣ ସେତେବେଳେ ରହିବାକୁ ହେବ ?" ପଚାରିବା ଭଙ୍ଗୀରୁ ଜଣାଗଲା, ସିଏ କେମିତି ଭୟ ପାଇ ଯାଇଛନ୍ତି । ବୁଢ଼ୀ କହିଲେ, "ମାଇକିନିଆ କଥା ମୁଁ ମାଇକିନିଆ ବୁଝିବି, ତୁମେ ଗୋଟାଏ କାହିଁକି ରହିବ ?"

"ହଁ, ହଁ, ଠିକ କଥା, ମୁଁ ବି ସେହି କଥା ଭାବୁଥିଲି" କହି ପଧାନେ ଆରାମରେ ଗୋଟିଏ ନିଃଶ୍ୱାସ ମାରିଲେ । ବୁଢ଼ୀ କହିଲେ, "କିନ୍ତୁ ସେ ଯଦି ତମ ମୁହଁରୁ ଶୁଣିବାକୁ ଚାହେଁ, ତାହାହେଲେ ତୁମକୁ ବି କହିବାକୁ ହେବ; ନଇଲେ ଦରକାର ନାହିଁ ।" ପଧାନେ କହିଲେ, 'ଠିକ, ଠିକ, ଆଉ ଦେଖ, ଯଦି ସେମିତି ଦେଖେ, ତାକୁ କାଢ଼ିଦେଲା ବେଳେ ଯେ କିଛି ଦେଇ କାଢ଼ି ଦିଆ-ଯିବ, ସେ କଥା ବି କହିବ—ତା' ମାନେ ତୁମର ମତ ହେଲେ । କହୁଥିଲି କଣ କି, ଦରକାର ପଡ଼ିଲେ ମଝିରେ ମଝିରେ ଆସି ଆମଠୁ କିଛି ସାହାଯ୍ୟ—ତା ମାନେ, ଅନ୍ୟ ଜାଗାରେ କାମ ପାଇବା ପର୍ଯ୍ୟନ୍ତ, ଯଦି ଆମର ସାହାଯ୍ୟ ତାର ଦରକାର ହୁଏ ।' ବୁଢ଼ୀ କହିଲେ, 'ତୁମେ ବଡ଼ ଅଚ୍ଛା ଲୋକ ! ସେ ଅନ୍ୟ

କାଗାରେ କାମ ପାଇବ ନାହିଁ କାହିଁକି ? ଏତେ ଦିନଯାକେ ଅଉ କଣ ଶିଖି-ଥିଲି ? ସେଥିପାଇଁ ଆମ ମୁଣ୍ଡ ବଥେଇବା ଦରକାର ନାହିଁ ।' ପଧାନେ କହିଲେ, 'ନା, ନା, ସେ କଥା ଆମର ଭାବିବା ଦରକାର ନାହିଁ । ତେବେ ତୁମେ ତ ତାକୁ ଯେମିତ ଶିଖେଇଛ'—ବୁଢୀ ଭୂଲ ପଡ ଚଢ କରି ପଚାରିଲେ, "କଣ, ମୁଁ ତାକୁ ଶିଖେଇଛି ?" ପଧାନେ ଶଙ୍କିଯାଇ କହିଲେ, "ମୁଁ—ମୁଁ କଣ କହୁଥିଲି କି, ମୁଁ କହୁଥିଲି, ତୁମେ ତାକୁ କେତେ ଯତ୍ନରେ ଶିଖେଇଛ । ସେ ଯେତେବେଳେ ଇସ୍କୁଲରୁ ଆସିଲା, ଆଠ ନଅ ବର୍ଷ ବୟସ ହେଲେ କଣ ହେବ, କିଛି ଶିଖି ନ ଥିଲା । ତୁମେ ତାକୁ ସବୁ ଶିଖେଇ ମଣିଷ କଲ—ତେବେ, ତୁମେ ଯାହା କହୁଛ ଯେ ତା' ମୁହଁ ବଢିଯାଇଛି, ସେ କଥା ଛାଡ ବାକି ସବୁ କଥା ଶିଖେଇ—"ବୁଢୀଙ୍କ ରାଗ ମରି ନ ଥିଲା, କହିଲେ, 'ବେଶ, ବାକି ତା'ମୁହଁ କିଏ ବଢେଇଲା ମୁଁ ଟିକେ ଶୁଣେ ? କିଏ ତାକୁ ଅଛା କରି ଫୁଲେଇ ଦେଲା ? କିଏ 'ଶୁଭ ପାରି ପୋଷିଛି ମୁଁ ପୋଷିବି' ଶୁଣି ପାରି କିଣିଦେଲା ? ପାରିଭୁଡି ବନେଇ ଦେଲା ? କିଏ ଗୁଣ୍ଡୁଚିମୂଷା ଆଣି 'କାମ' 'କାମରେ' ବୋଲି ଡାକି ମୂଷା ପୋଷିବାକୁ ଦେଲା, ମୁଁ ଟିକେ ଶୁଣେ ? ମୁଁ ଯେତେବେଳେ ମୂଳରୁ କହୁ-ଥିଲି ଟୋକାଟିଏ ରଖ ବୋଲି, କିଏ କହିଲା, ନା, ନା, ସ୍ତ୍ରୀ ପିଲାଟିଏ ରଖିବା ଯେ ଆମ ଉପରେ ମାୟା ରଖି କାମ କରିବ ? ନିଅ, ଏଥର ମାୟାର ଠେଲା ସମ୍ଭାଳ ।"

ପଧାନେ ମଉଳ ପଡି ସ୍ୱୀକାର କଲେ, ଏ ସବୁ ବିଷୟରେ ଦୋଷ ତାଙ୍କର । ସ୍ୱାମୀଙ୍କୁ ଦୋଷ ସ୍ୱୀକାର କରିବାର ଦେଖି ସ୍ତ୍ରୀ ମଧ୍ୟ ନରମ ହୋଇ-ଗଲେ । ଶେଷକୁ ଦୁଇ ଜଣଙ୍କ ମଧ୍ୟରେ ସ୍ଥିର ହେଲା, ଦୋଷ ଦୁଇ ଜଣଙ୍କର, ପ୍ରଶ୍ରୟ ଦୁଇ ଜଣ ଦେଇଛନ୍ତି, ଦୁଇ ଜଣ ତା ସହିତ ଚାକର ପରି ବ୍ୟବହାର ନ କରି ନିଜ ପିଲା ପରି କରୁଛନ୍ତି, ଯେଉଁଠି ତାର ଅଡମାନ ଗେହ୍ଲା କଥା ଶୁଣି ରାଗିବାର ଉଚିତ ଥିଲା, ସେଠି ହସିଛନ୍ତି ।

ଘରେ ପଶିଲାବେଳକୁ ବୁଢୀ ଫୁସ୍‌ଫୁସ୍ କରି ପଧାନଙ୍କ କାନରେ କହିଲେ, "ଖୁବ୍ ଶକ୍ତ ହେବାକୁ ହେବ, ନରମ ହେଲେ ଚଳିବ ନାହିଁ ।"

# ବଡଲୋକ

[ ତିନି ]

କାମିନୀ ଅଗଣାରେ ଲୁଗା ଉଡ଼ଦେଇ ବାଡ଼ଆଡ଼େ କଂସାବାସନ ମାଜୁ-ଥିଲା । ଘର ସାମନାକୁ ଗାଡ଼ି ଆସିବାର ଅବାଜ ଶୁଣି ହାତଗୋଡ଼ ନ ଧୋଇ ଖବର ଶୁଣିବ ବୋଲି ସେଆଡ଼େ ପାଣି କରକରକା ଦଉଡ଼ିଲା । ଫାଟକ ଫିଟାଇ ତାଙ୍କୁ ଘରକୁ ଆସିବାକୁ ଦେବ କଣ ନା ତାଙ୍କ ବାଟ ଓଗାଳି ଛିଡ଼ାହୋଇ 'ଖବର କଣ','ଖବର କଣ' ବୋଲି ତାଙ୍କୁ ଅଧୈର୍ଯ୍ୟ ଭାବରେ ଖବର ଦେବାକୁ ଦାବୀ କଲା ।

ସେମାନେ ଅତି ସଂକ୍ଷେପରେ ଏବଂ ଗମ୍ଭୀରଭାବରେ ଜଣାଇଦେଲେ, ସେମାନେ ସମସ୍ତ ସମ୍ପତ୍ତିର ଅଧିକାରୀ ହୋଇଛନ୍ତି ।

ଅନେକ ସମୟରେ ଆଶାର ଅତିରିକ୍ତ ସୌଭାଗ୍ୟ ହଠାତ୍ ଅନପେକ୍ଷିତ ଭାବରେ ଲାଭ କଲେ ଲାଭ କରିଛି ବୋଲି ଲୋକର ପ୍ରଥମ ପ୍ରଥମ ବିଶ୍ୱାସ ହୁଏ ନାହିଁ । ସେମାନଙ୍କର ସମ୍ପତ୍ତିଲାଭର କଥା ଶୁଣି କାମିନୀର ମନର ଭାବ ପ୍ରଥମରେ ଠିକ ଏହିପରି ହେଲା । ସେଥିପାଇଁ ସେ ତିନିଥର ପଚାରିଲା,'ସତ,ସତ, ସତ?' ନିଜକୁ ନିଜେ କହିଲା, "ଇଲୋ, ମୋତେ ଖାଲି ସ୍ୱପ୍ନପରି ଲାଗୁଛି—ଦେଢଲକ୍ଷ ଟଙ୍କାର ସମ୍ପତ୍ତି,ମାସକୁ ପାଞ୍ଚଶ ଛଅଶ ଆମଦାନି ?" ତା ପରେ ଆନନ୍ଦରେ ତେଇଁ ତେଇଁକା,ଘର ଭିତରକୁ ଦଉଡ଼ିଲା । ସେଠୁ ରନ୍ଧାଘର ଭିତରକୁ ଯାଇ ଗୀତ ଗାଇ ନାଚି, କୁଦି, ଗୋଟାଏ କାଚଗିଲାସ ଭାଙ୍ଗି, ଆସି ଗିଲାସ ଭାଙ୍ଗିଛି ବୋଲି ପଧାନ ଘରଣୀଙ୍କୁ ଖବର ଦେଲା ।

ପଧାନ ଘରଣୀ ତାର ଏ ଆନନ୍ଦର ପ୍ରବଳତାରେ ବାଧା ଦେଇ ଓ ନିଜର ବକ୍ତବ୍ୟର ପ୍ରଥମ ସଂକେତ ଦେଇ ତାକୁ ସ୍ମରଣ କରାଇଦେଲେ, ସମ୍ପତ୍ତିର ଅଧିକାରୀ ସେ ନୁହେଁ ;ମାତ୍ର ସେମାନେ ହୋଇଛନ୍ତି । କାମିନୀ ଦୁଇ ହାତ ଦେଇ କପାଳରୁ ମୁଣ୍ଡର ବାଳକୁ ଏଡ଼ାଇ ବଡ଼ ବଡ଼ ଆଖି ତୋଳି ଆଗେ ଅନାଇଲା ।

କିଛି ବୁଝି ନ ପାରି ହସିଦେଇ କହିଲା, "ଇଲୋ ଏ କେମିତବା କଥା ? ମୁ ଯେମିତି ଜାଣେ ନାହିଁ ତୁମେ ସମସ୍ତେ ପାଇଛ ବୋଲି ।" ତା ପରେ ସେମାନେ ଯେ କିଛି ଖାଇ ନାହାନ୍ତି, ଏ କଥା ମନେ ପଡିଲାରୁ ଦୌଡିଲା ରନ୍ଧାଘରକୁ । ମେଟି ଯାଇ ଝଟ ଗୋଟାଏ ମଶିଣା ପକାଇଦେଇ ଦୁଇଜଣଙ୍କ ପାଇଁ ଖାଇବାର ବାଢିବୁଢି ଆସି ବୁଢାବୁଢୀଙ୍କ ହାତ ଧରି ନେଇ ଖାଇବା ଯାଗାରେ ବସାଇ ଦେଲା । ପଧାନେ ତ ପଞ୍ଝାଣ୍ଡ ପିନ୍ଧି ସୁଦ୍ଧା ବସିପଡିଲେ । ବୁଢୀ କହିଲେ, "କିଲୋ କାମିନୀ, ତୋର କଣ ହୋଇଛି କି ? ତୋ ମୁଣ୍ଡ କଣ ବିଗିଡିଗଲାଣି ? ତାଙ୍କ ପାଇ ମେଜରେ ଦେଇ ନାହୁଁ କାହିଁକି ?"

"ଇଲେ ମାଲୋ, ମୁଁ କଣ କରିବି, ଆଜ ମୋର କଣ ହେଉଚ କେଜାଣି ? ଆଚ୍ଛା ରୁହ ରୁହ," କହି ଦୁଇ ଜଣଙ୍କର ଖାଇବା ଜିନିଷ ସବୁ ନେଇ କାମିନୀ ମେଜ ଉପରେ ରଖିଲା । ଏହା ଦେଖି ବୁଢୀ କହିଲେ, "କିଲୋ ମୋର କାହିଁକି ମେଜ ଉପରକୁ ନେଉଛୁ ? ମୁଁ କେବେ ମେଜ ଉପରେ ଖାଉଥିଲି କିଲୋ ?"

କାମିନୀ କହିଲା, "ମଲା କାହିଁକି ଖାଇବ ନାହିଁ ମ ? ଈଶ୍ବର କଣ ତୁମକୁ ମେଜ ଉପରେ ଖାଇବା ଭଲ କରି ନାହାନ୍ତି କି ?" ତା ପରେ ବୁଢୀଙ୍କ ହାତ ଧରି ନେଇ ବୁଢାଙ୍କ ସାମନାରେ ମେଜ ପାଖରେ ଆଉ ଗୋଟିଏ ଚଉକି ଉପରେ ବସାଇ କହିଲା, "ମୋ କଥା ରଖ, ଆଜ ଦିନକ ତୁମେ ଦୁଇଜଣ ଏମିତ ଏକାଠି ମେଜ ଉପରେ ଖାଅ, ମୁଁ ଏମିତ ଛିଡାହୋଇ ତୁମକୁ ଦେଖୁଥାଏଁ ।"

କଣ କରିବେ, ବୁଢାବୁଢୀ ହସି ହସି ଖାଇବାକୁ ଲାଗିଲେ । କାମିନୀ ସେମାନଙ୍କୁ ଝୁଆଉ ଖୁଆଉ କହିଲା, "ଏ ବେଳା ଯେମିତ ସେମିତ; ଉପରବେଳ ମୁଁ ଭୋଜି କରିବି । ସେ ଭୋଜିରେ ତୁମ ଦୁଇଜଣଙ୍କ ଛଡ଼ା ଆଉ କାହାକୁ ନିମନ୍ତ୍ରଣ କରିବି ନାହିଁ ।"

# ବଡ଼ଲୋକ

ଖାଇ ସାରିଲା ପରେ ପଧାନେ ବାଡ଼ ଭିତରକୁ ଗଲାରୁ କାମିନୀ କ୍ୟାନ୍‌ଭିସ୍ ଆରାମ-ଚଉକି ନେଇ ବାତାପିଗଛର ଛାଇରେ ପକାଇଲା ! ମୋଡ଼ାଟିଏ ନେଇ ତା ପାଖରେ ରଖିଦେଇ ଚୁଙ୍ଗୀ ଓ ଧୂଆଁ ଖାଇବାର ସରଞ୍ଜାମ ସବୁ ତା ଉପରେ ରଖିଲା । ପଧାନେ ଚଉକିରେ ଆଉଜି ପଡ଼ି ଅତି ପ୍ରସନ୍ନ ମନରେ ଚାରିଆଡ଼କୁ ଅନାଇଲେ । ବାଡ଼ିର ଶାଗପଟାଳିସବୁ ବଡ଼ ପରିପାଟୀ ଦିଶୁଥିଲା । ପଟାଳି ଚାରିପାଖରେ ଧାଡ଼ି ଧାଡ଼ି ମଲ୍ଲୀବୁଦାମାନଙ୍କରେ ଅସଂଖ୍ୟ ମଲ୍ଲୀକଢ଼ି ଯେପରି ତାରା ଫୁଟିଛି ! କୂଅ ପାଖରେ କାମିନୀ ଗଛର ମୂଳ ପରିଷ୍କାର କରି-ହୋଇ ପାଣି ଦେବାପାଇଁ ମନ୍ଦା ଖୋଳା ହୋଇଛି । ଏ ସବୁରେ ପଧାନେ କେବଳ କାମିନୀ ହସ୍ତର ନିପୁଣତା ଓ ତାହାର ମାର୍ଜିତ ରୁଚି ଦେଖୁଥିଲେ ବାଡ଼ ପୋଖରୀ କୂଳର ଆମ୍ବଗଛର ପତ୍ର ଗହଳରେ ଲୁଚି ରହି କୋଇଲି ଏହି ସମୟରେ ତାର ସ୍ୱରଲହରୀରେ ସାହି ବୁଡ଼ାଇବାକୁ ଆରମ୍ଭ କଲା । ପଧାନ-ଙ୍କର ମନେ ହେଲା, ଯେପରି କାମିନୀକୁ କେବଳ ଅନ୍ତଃପୁର ଆଢୁଆଳ ସଙ୍ଗୀତ-ମୟ କରିପାରେ । କ୍ରମେ ବେଳ ଗଡ଼ିଗଲା, ଛାଇ ନେଉଟିଲା, ଅପରାହ୍ଣର ଶାନ୍ତ ଆଲୋକ ସୁପ୍ତ ଶିଶୁର ହସଟିକ ପରି ପୃଥ୍ୱୀ ମୁହଁରେ ଅସ୍ତେ ଅସ୍ତେ ମିଳାଇଗଲା ସେହି ସଙ୍ଗେ ସଙ୍ଗେ ସେମାନଙ୍କର ଏହି ଷଡ଼ଯନ୍ତ୍ରର ଛାୟା ଯେ କାମିନୀର ମୁଖମୟୂଖ ଉପରେ କ୍ରମେ ଘନାଇ ଆସିବ, ତାହାର ଆଶଙ୍କା ପଧାନଙ୍କ ମନରେ ସନ୍ଧ୍ୟାର ଅନ୍ଧକାର ସହିତ ନିବିଡ଼ ହୋଇ ଆସିଲା ।

ଅନ୍ଧାର ହୋଇଗଲା; କିନ୍ତୁ ପଧାନଙ୍କୁ କାମିନୀର ଚିନ୍ତା ଏପରି ଉଦାସୀନ କରିଥିଲା ଯେ, ସେ ତେବେ ବି ଆରାମଚଉକିରେ ପଡ଼ିରହିଲେ। କାମିନୀ ରୋଷାଘର ସାରି ବାଡ଼କୁ ଆସି ମଲ୍ଲିଫୁଲ ତୋଳୁଥିଲା, ହଠାତ୍ ପଧାନଙ୍କ ଉପରେ ନଜର ପଡ଼ିଯିବାରୁ ଦୌଡ଼ିଯାଇ କହିଲା, "ତୁମେ ଏତେବେଳ ଯାଏ ଏଠି ବସିଛ ! ମୁଁ ମନେ କରିଥିଲି ତୁମେ ବାହାରକୁ ବୁଲିବାକୁ ଯାଇଛ । ସଞ୍ଜବତୀ ଲଗିଗଲାଣି, ଘରକୁ ଯାଅ ।" ପଧାନେ ଉଠି ଘର ଭିତରକୁ ଗଲେ । ସେତିକିବେଳେ ଅନ୍ୟ ଘର ଦୁଆର ମୁହଁରେ ଛିଡ଼ା ହୋଇ ପଧାନ ଘରଣୀ ଡାକିଲେ, "କାମିନି, କାମିନି, ଏଆଡ଼କୁ ଆ, ତୋ ସାଙ୍ଗରେ କଥା ଅଛି ।"

## ସାମୟିକ

ଏ ଅଘଟଣର ଉଦ୍ଦେଶ୍ୟ ବୁଝିପାରି ପଧାନେ ଆଉ ଘରେ ପଶିବେ କଣ, ବାଡ଼ଟି ଧରି ଅସ୍ତେ ଅସ୍ତେ ସିଧା ସଡ଼କ ଆଡ଼କୁ ମୁହାଁଲେ । ଉଦାସ ଭାବରେ ସେ କେତେବେଳ ପର୍ଯ୍ୟନ୍ତ ସଡ଼କେ ସଡକେ ବୁଲିଲେ, ତାର ଠିକଣା ନାହିଁ । ଅତ୍ୟନ୍ତ କ୍ଳାନ୍ତ ବୋଧ ହେଲାରୁ ଘରକୁ ଫେରିଲେ । ରାତି ପ୍ରାୟ ଦଶଟା, ସାହିର ସବୁ ତାଟି କବାଟ ପଡ଼ିଲାଣି, ସମସ୍ତ ସାହି ନୀରବ ନିଶ୍ଚଳ । ଏ ନୀରବତା ଆଜି ପଧାନଙ୍କୁ ଅସହ୍ୟ ଲାଗିଲା । ସ୍ୱେର ପରି ନିଜ ଘରର ଫାଟକ ପାଖକୁ ଆସି ଦେଖିଲେ, ସବୁ ଚୁପ୍ ଚାପ୍, ଅନ୍ଧାର, ଘର ଖାଲି ଖାଇ ଖାଇ ଗୋଡ଼ଉଛି । ତାଙ୍କୁ ଲାଗିଲା, ଯେପରି ସଂସାର ଯାକର ନୀରବତା ଚାରିଆଡ଼୍, ତାଙ୍କ ଘର ଉପ-ରକୁ ମାଡ଼ି ପଡ଼ୁଛି । ଫାଟକ ଉପରେ ଆଉଜି ପଡ଼ି ପଧାନେ ହତଚେତନ ପରି ଘର ଆଡ଼କୁ ଅନାଇ ରହିଲେ । କିଛି କ୍ଷଣ ପରେ ରନ୍ଧାଘରର ଡିବାଲିର ଆଲୁଅ, ଯାହା ଗୋଟିଏ ଛୋଟ ଝିଡ଼କି ଦେଇ ବାହାରକୁ ଆସୁଥିଲା, ତାଙ୍କ ନଜରରେ ପଡ଼ିଲା । ଦେଖିଲେ, କାମିନୀ ଝିଡ଼କି ଉପରେ ଦୁଇ କହୁଣୀ ଭରା ଦେଇ ମୁଣ୍ଡ ନୁଆଁଇ ଛିଡ଼ା ହୋଇଛି । ପଧାନଙ୍କ ଚମକ ପଶିଲା । ଚଞ୍ଚଳ ପକେଟ୍‌ରୁ ଡେଲଙ୍ଗୀ ପିକା ଗୋଟାଏ ନେଇ ଦିଆସିଲି ମାରି ଆଗ୍ରହକରି ଦୁଇକଳ ଓଟାରି ଦେଲେ । ବୋଧହୁଏ ପିକାଧୂଆଁରେ ମନର ଦ୍ୱିଧା, ସଂକୋଚ, ଆଶଙ୍କା ସବୁ ଅନ୍ତତଃ ସେହି ସମୟର ସକାଶେ ଘୋଡ଼ାଇ ହୋଇ-ଗଲା, ଦିହରେ ଟିକେ ସ୍ଫୁର୍ତ୍ତି ଫେରି ଆସିଲା । ଫାଟକ ଫିଟାଇ ଘରେ ପଶିଲେ ।

ବସିବା ଘରେ କେହି ନ ଥିଲେ । ଶୋଇବା ଘରକୁ ଯାଇ ଦେଖିଲେ, ବୁଟୀ ମୁହଁ ମାଡ଼ି ବିଛଣାରେ ପଡ଼ିଛନ୍ତି । ପଚାରିଲେ—"ଶୋଇଲଣି ?"

ବୁଟୀ—ନା, ଖାଲି ସେମିତି ପଡ଼ିଛି ।

ପଧାନେ—ଖାଇଲଣି ?

ବୁଟୀ—ତୁମେ ଆସି ନ ଥିଲ, ଖାଆନ୍ତି କେମିତି ?

ପଧାନେ—ତେବେ ଶୋଇଚ ଯେ ?

ବୁଢୀ—ବହୁତ ଟିକେ ଭଲ ଲାଗିଲା ନାହିଁ, ପଡିଗଲା ।

ପଧାନେ ଯଦିବା ବୁଝିଲେ, ଦେହ ଭଲ ଥିଲା; ମାତ୍ର ମନଟା ଭଲ ଲାଗୁ ନ ଥିଲା, ତଥାପି ସେ ବିଷୟରେ କିଛି କହିଲେ ନାହିଁ । ଆସି ଖଟ ଦାଣ୍ଡରେ ବସିଲେ । ଅଳ୍ପ ସମୟ ଉତ୍ତାରେ ବୁଢୀ କାନ୍ଥ ଆଡ଼କୁ ମୁହଁ ଫେରାଇ କହିଲେ, "ମୁଁ ତାକୁ କହୁଛି, ସବୁ କହୁଛି, ସବୁ ବୁଝେଇ ଦେଉଛି ।"

ପଧାନେ—ସେ କଣ କହିଲା ?

ବୁଢୀ—ସେ କିଛି କହିଲା ନାହିଁ । ଚୁପ୍ ଚାପ୍ ହୋଇ ରହିଲା । ଖାଲି ଶୁଣିଗଲା । ମୁଁ କହିଲାବେଳେ ଥରେ ଦିଥର ତା ମୁହଁ ଆଡ଼କୁ ଚାହିଁ ତା ମୁହଁର ରେଖାସବୁରୁ ତା ମନର କଷ୍ଟ ବୁଝି ପାରିଲି । ମତେ ବି କହିବାକୁ କାଟିକର ପାଠ ପରି ଲାଗିଲା ।

ବୁଢୀ କର ନେଉଟାଇଲେ, ଉଠିକରି ବସି ଦୁଇହାତରେ ମୁଣ୍ଡବାଳ ସଜାଡିଲେ । ପଧାନଙ୍କ ଆଡ଼କୁ କିଛିକ୍ଷଣ ଅନାଇ କହିଲେ, "ଦେଖ, ଆମ ଉପରେ ଠାକୁରାଣୀଙ୍କର ମାୟା ବସିଯାଇଛି । କିନ୍ତୁ କଣ କରାଯିବ, ଅନ୍ୟ ଉପାୟ ତ ନାହିଁ ।"

ପଧାନେ ପଚାରିଲେ, "ସେ କଣ କିଛି କାନ୍ଦାକଟା କରିଥିଲା ?"

'ଏଠି କରି ନାହିଁ, ବୋଧ ହୁଏ ରନ୍ଧାଘରେ କରୁଛି' କହି ବୁଢୀ ବୁଢାଙ୍କ ଦେହରେ ହାତ ଚିପି ଆଉ କିଛି କହିବାକୁ ମନା କଲେ । କାରଣ ସେତିକି-ବେଳେ କାମିନୀ ଘର ଭିତରକୁ ଆସିଲା । ତାକୁ ପଶିବାର ଦେଖି ପଧାନେ ଉଠି ଯାଇ ଖିଡିକି ପାଖରେ ଛିଡ଼ା ହୋଇ ବାହାରକୁ ଅନାଇଲେ । କାମିନୀ ବୁଢୀଙ୍କ ସହିତ କଥା କହିବା ବେଳେ ତା ଆଡ଼କୁ ଆଡ଼େଇ ଆଡେଇ ଅନାଉଥାନ୍ତି । ଦେଖିଲେ, ମୁହଁଟି ଶୁଖିଯାଇଛି, କାନ୍ଦ କାନ୍ଦ ଆଖିର ସ୍ୱରପଟେ କ୍ଲାନ୍ତିର ଦାଗ

ପଡ଼ୁଛି । ସମସ୍ତ ଶରୀର ଯେପରି ସଙ୍କୁଚିତ ହୋଇ ରହୁଛି । ସେ ଡ଼େଇଁ ଡେଇଁ ଚାଲିବା, ଅକାରଣେ ଚମକି ଉଠିବା, ସେ ସ୍ଫୂର୍ତ୍ତି ଆଉ ନାହିଁ ।

ଶଙ୍କିତ କଣ୍ଠରେ ଡାକ ହେଲା, "ବାବୁ, ଖାଇବ ଆସ, ଜାଗା ହେଲାଣି ।" ଏତିକି କହି କାମିନୀ ଯେତେବେଳେ ପଧାନଙ୍କ ପାଖ ଦେଇ ସେ ଘରୁ ବାହାରି ଗଲା, ପଧାନେ ଦେଖିଲେ ତା ଓଠ ଥରୁଛି । ପଧାନେ ଆଉ ପଧାନ ଘରଣି ଦୁହେଁ ଚୁପ୍‌ଚାପ୍ । କାମିନୀର ଆହ୍ବାନର ସମ୍ପୂର୍ଣ୍ଣ ମର୍ମ ପଧାନେ ଗ୍ରହଣ କରି-ପାରି ନ ଥିଲେ । କାନରେ କାମିନୀର କଥା ବୋଧ ହୁଏ ପଶିଥିଲା; କିନ୍ତୁ ମନ କେବଳ 'ବାବୁ' ଡ଼ାକ ଶୁଣି ତାର ଅର୍ଥଭେଦ କରୁ କରୁ ସେଇଠି ଅଟକି ଯାଇଥିଲା । ଉତ୍ତରାଧିକାର ଲାଭଦିନରୁ କାନ ଓ ମନ ଘରେ ବାହାରେ ଯେଉଁ ଅଭ୍ୟର୍ଥନା ଶୁଣିବା ପାଇଁ ଏଡ଼େ ଅଧୈର୍ଯ୍ୟ ହୋଇଉଠିଥିଲା, ଯେଉଁ ସମ୍ବୋଧନ ଶୁଣିଲେ କଣ୍ଠ ପ୍ରତିଷ୍ଠା ହେବ ଓ ଜଗତ ସମ୍ମୁଖରେ ନିଜର ସମ୍ମାନ ପ୍ରତିଷ୍ଠିତ ହେବ ବୋଲି ମନେ କରିଥିଲେ, ନିଜର ସେ ଆକାଙ୍‌କ୍ଷାର ସମର୍ଥନ କାମିନୀ ମୁହଁରେ ଏପରି ନୀରସ ଶୁଭିବ ବୋଲି ଭାବି ନ ଥିଲେ । ତାଙ୍କୁ ଯେ କେହି ବାବୁ ଅବା ସାହେବ ଭାବୁ ନ ଥିଲେ, ତାହା ନୁହେଁ; କିନ୍ତୁ ସେ ଜାଣିଥିଲେ , ସେଥିରେ ଆନ୍ତରିକତା ନ ଥିଲା । ତାଙ୍କର ସ୍ତ୍ରୀ ମଧ୍ୟ ଜାଣିଥିଲେ, ତାଙ୍କର ହାବଭାବ ଖୋରାକ ପୋଷାକ ସକାଶେ ସେ ସମାଜ ମଧ୍ୟରେ ଉପହାସର ବସ୍ତୁ । ଉପ-ହାସଟା ପଧାନେ ଓ ପଧାନ-ଘରଣୀଙ୍କ ଚକ୍ଷୁକର୍ଣ୍ଣର ଅନ୍ତରାଳରେ ଯଦି ହେଉ-ଥାନ୍ତା, ତାହାହେଲେ ଅବା ସେ ବିଷୟରେ ଉଦାସୀନ ରହିବା ସେମାନଙ୍କ ପକ୍ଷରେ ସମ୍ଭବ ହୋଇଥାନ୍ତା; କିନ୍ତୁ ସାହିର କେତେକ ଲୋକଙ୍କର, ବିଶେ-ଷରେ ଯୁବକବୃନ୍ଦର ଅସ୍ପର୍ଦ୍ଧା ଏତେ ବେଶି ଯେ, ସମସ୍ତ ସମୟରେ ସେମାନେ ପଧାନଙ୍କୁ ତାଙ୍କ ପଛରେ ଉପହାସ କରିବାର ପ୍ରୟୋଜନୀୟତା ଆଦୌ ବୁଝୁ ନ ଥିଲେ । ସେଥିପାଇଁ ଅର୍ଥାଗମ ସଙ୍ଗେ ସଙ୍ଗେ ପଧାନେ ମନେ କଲେ, ମାନହାନିର କ୍ଷତିପୂରଣ ସମାଜଠାରୁ ସୁଧମୂଳ ସହିତ ଆଦାୟ କରିବାର ଏ ସୁବର୍ଣ୍ଣ ସୁଯୋଗ । ବର୍ତ୍ତମାନ ଧନ ପଛରେ ଥିବାରୁ ଏ ଦାବୀଟା ଯେ ନିଷ୍ଫଳ ଅସ୍ଥାଳନ

ନୁହେଁ, ଏହା ସମାଜ ବୁଝିବ ଏବଂ ଅନ୍ତରଙ୍ଗତା ଥାଉ କି ନ ଥାଉ, ସମାଜ ଯେଉଁ ସମ୍ମାନ ପ୍ରଦର୍ଶନ କରିବ, ତହିଁରେ ବିଦ୍ରୂପ ଲୁକ୍କାୟିତ କରି ରଖିବାକୁ ସାହସ କରିବ ନାହିଁ । କିନ୍ତୁ ଆଜି ପ୍ରଥମ କରି ବୁଝିଲେ, ସମ୍ମାନ ଯେଉଁ ବସ୍ତୁ, ସେଥିରେ କିଣା ବିକାର ଦୋକାନଦାରୀ ଚଳେ ନାହିଁ ଏବଂ ତାକୁ ଟଙ୍କା ଜୋରରେ ଆଦାୟ କରିବାର ସ୍ପୃହାଟା ଏକପ୍ରକାର ଡ଼କାଇତି ।

## [ଗୃହ]

କାମିନୀ ଯେତେବେଳେ ସେ ଗୃହରେ ମଶିଣା ବିଛାଇ ତା ଉପରେ ପଡ଼ିଗଲା, ସେତେବେଳେ ସେହି ନିର୍ଜ୍ଜନ ଘରଟିରେ ସେ ତାର ରୁଦ୍ଧ ଅଶ୍ରୁର ବେଗ ଆଉ ସମ୍ଭାଳି ପାରିଲା ନାହିଁ । ତାର କ୍ଷୁବ୍ଧ ଚିତ୍ତରେ କେବଳ ବାରମ୍ବାର ପ୍ରଶ୍ନ ଉଠିଲା, ସେ କେଉଁ ଦୋଷ କରିଥିଲା, ଯାହା ପାଇଁ ଦଣ୍ଡ ଏତେ ସ୍କୁରିତ ହେଲା । ସେ ପଧାନଘରଣୀଙ୍କ ମନ ଜାଣି ନୂତନ ଅବସ୍ଥାର ଅନୁରୂପ କାର୍ଯ୍ୟ କରିବାକୁ ସ୍ୱୀକୃତ ହୋଇଥିଲା; ତଥାପି ତାର ନିବେଦନ ଅଗ୍ରାହ୍ୟ ହେଲା । ତାର ମନେ ପଡ଼ିଲା, ତାର ପ୍ରାର୍ଥନା ଅଗ୍ରାହ୍ୟ ହେଲା କାର୍ଯ୍ୟରେ ତ୍ରୁଟି ସକାଶରୁ ନୁହେଁ; ମାତ୍ର ତାର ରହିବାଟା ସେମାନଙ୍କ ପକ୍ଷରେ ଲଜ୍ଜାଜନକ ହେବ ବୋଲି । ପିତୃମାତୃହୀନା ଅସହାୟା ବାଳିକା ହୃଦୟର ଅତି ନିଭୃତ ପ୍ରଦେଶରେ ଯେଉଁଟି ଅତି ସନ୍ତର୍ପଣରେ ତାର ଆତ୍ମମର୍ଯ୍ୟାଦା ଜ୍ଞାନକୁ ଗୋପନ କରି ରଖିଥିଲା, ଆଜି ସେଇଟି ଏ କଥାଟା ଅତି ନିର୍ଦ୍ଦୟ ଭାବରେ ଆଘାତ ପ୍ରଦାନ କଲା । ଜଗତରେ ସେ ଯେ ନିତାନ୍ତ ଅକିଞ୍ଚନ, ସେଥିପାଇଁ ଅନ୍ୟଠାରୁ ଆଘାତ ଅପମାନ ପାଇଲେ ନୀରବରେ ସହ୍ୟ କରେ । ତାର ଜ୍ଞାନ ହେବା ଅବଧି ବାପମାଙ୍କୁ କେବେ ଦେଖି ନାହିଁ; କିନ୍ତୁ ପଧାନ ଏବଂ ତାଙ୍କ ସ୍ତ୍ରୀଙ୍କର ସେ ଯେଉଁ ସେବା କରୁଥିଲା, ତାଠୁଁ ଅଧିକ ଯେ ସେ ତାର ବାପମାଙ୍କର କରିପାରି ନ ଥାନ୍ତା, ଏହା ତାର ଅନ୍ତର୍ଯ୍ୟାମୀ ତାକୁ ସାକ୍ଷ୍ୟ ଦେଲେ । ସେମାନଙ୍କୁ ଆପଣାର କରି ଭାବିଥିଲା ବୋଲି ଆଜି ଏହି ଆପଣାର କରି ଭାବିବାଟା ସେମାନଙ୍କ ପକ୍ଷରେ ଲଜ୍ଜାଜନକ ହେବାର ଦେଖି ଅପମାନରେ

ତାର ହୃଦୟ ଭାଙ୍ଗିପଡ଼ିଲା । ଅନେକ କାନ୍ଦିଲା, ଶେଷରେ କ୍ଳାନ୍ତ ହୋଇ ଶୋଇ ପଡ଼ିଲା ।

ପଧାନ ଏବଂ ତାଙ୍କ ସ୍ତ୍ରୀଙ୍କର ମଧ୍ୟ ସେ ରାତି ଭଲରେ କଟି ନାହିଁ ଅନେକ ପରାମର୍ଶ ଏବଂ ବିଚାର ପରେ ଉଭୟେ ସ୍ଥିର କଲେ, କାମିନୀକୁ ବର୍ତ୍ତମାନ ସକାଶେ ମାତ୍ରେ ଦୁଇମାସ ପାଖରେ ରଖିବାକୁ । ପରେ ଛାଡ଼ିଦେବେ । ତା ମଧ୍ୟ ଯେତେବେଳେ ଆକସ୍ମିକ ଜଣାଯିବ ନାହିଁ, କାରଣ ବର୍ତ୍ତମାନ ସେ ଯେଉଁ ଆଶ୍ରୟ ପାଇଛି, ତାହା ଭବିଷ୍ୟତର ଏହି ପନ୍ଥା ଅବଲମ୍ବନ ପକ୍ଷରେ ଯଥେଷ୍ଟ ହେବ । ଅବଶ୍ୟ କାମିନୀକୁ ବର୍ତ୍ତମାନ ରଖିବା ସମ୍ବନ୍ଧରେ ଏ ଯେଉଁ ସିଦ୍ଧାନ୍ତରେ ସେମାନେ ଉପନୀତ ହେଲେ, ତାହା ଯେ ଭବିଷ୍ୟତରେ ତାଙ୍କୁ ବାସ୍ତବିକ ଚଡ଼ିବା ସକାଶେ, ତାହା ନୁହେଁ । ସେମାନଙ୍କର ଚିତ୍ତ ସ୍ୱଭାବତଃ ଦୟାପରବଶ; କିନ୍ତୁ ଦୁର୍ବଳ ହେବାରୁ ସନ୍ତାନର ଆଶା ମଧ୍ୟ ଛାଡ଼ିପାରୁ ନ ଥିଲା । ଉଭୟବିଧ ଇଚ୍ଛା ମଧ୍ୟରେ ଏହିପରି ଗୋଟାଏ ମୋଟା-ମୋଟି ରକମର ରଫା କରିଦେଇ ସେମାନେ ବର୍ତ୍ତମାନର ସମସ୍ୟା ସମାଧାନ କଷ୍ଟରୁ ରକ୍ଷା ପାଇଲେ ।

ତହିଁ ଆରଦିନ ସକାଳୁ କାମିନୀ ପ୍ରତିମତ ଆପଣା କାମଦାମ ସାରି ଯେତେବେଳେ ପଧାନଙ୍କୁ ଅଫିସ ଯିବା ପୂର୍ବରୁ ଖାଇବାକୁ ଦେଲା, କହିଲା, "ଆଜି ଅଫିସକୁ ଯିବାବେଳେ ମୋତେ ସେହି ବାଟରେ ମାମାଙ୍କ ଇସ୍କୁଲରେ ଛାଡ଼ିଦେଇଯିବ ।" ଏହି 'ମାମାଙ୍କ ଇସ୍କୁଲ୍' ହେଉଛି ମିଶନ ଅନାଥାଶ୍ରମ, ଯେଉଁଠୁ ପଧାନେ କାମିନୀକୁ ଆଣିଥିଲେ । ପଧାନେ କହିଲେ, "କାଲି ଆମେ ଦୁଇ ଜଣ ଠିକ କରିଛୁ, ତୋତେ ଅନ୍ତତଃ ଆଉରି ମାସେ ଦୁଇମାସ ରଖିବାକୁ । ଆମ୍ଭେମାନେ ଯେତେବେଳେ ନୂଆ ଘରକୁ ଉଠିଯିବା, ସେତେବେଳେ ତୋ ଯିବା କଥା ବିଚାର କରିବା ।" ଏହା କହୁଥାଇ ପଧାନେ ମନରେ ଯଥେଷ୍ଟ ଆନନ୍ଦ ଅନୁଭବ କଲେ । ମନେ କଲେ,

କାମିନୀ ଏ ସବୁ ଶୁଣି ଖୁସି ହେବ । କିନ୍ତୁ ହେଲା ତାର ବିପରୀତ । କାମିନୀ କେବଳ ସ୍ଥିର ଭାବରେ କହିଲା, "ମୁଁ ରହିବି ନାହିଁ । ମୋତେ ଅନ୍ଧ ମାମାଙ୍କ ଇସ୍କୁଲରେ ଛାଡ଼ିଦେଇ ଆସ ।" ବୃଦ୍ଧ କାମିନୀର ଏ ଦୃଢ଼ତା ଦେଖି ବିଚଳିତ ହୋଇପଡ଼ିଲେ । କହିଲେ, "ନୂଆ ଘରକୁ ଉଠିଗଲେ ଦୁଇ ବାରମାସ ପରେ ତୋ ଯିବା କଥା ଆମେମାନେ ବିଚାର କରିବା କହିଲି ବୋଲି ତୁ କଣ ବୁଝିଲୁ ଆମେମାନେ ଠିକ୍ ବାରମାସ ଯେଉଁ ଦିନ ଶେଷ ହେବ, ସେହି ଦିନ ତୋତେ କାଢିଦେବା ? କାଲି ରାତିରେ ଆମ ଦୁଇଜଣଙ୍କର ସେ ସମ୍ବନ୍ଧରେ ଅନେକ କଥାବାର୍ତ୍ତା ହୋଇଛି । ତୁଏ ତ ତୋତେ ବରାବର ରହିବାକୁ ହେବ ।" ତଥାପି ଧୀରେ ଅଥଚ ଅବିଚଳିତ କଣ୍ଠରେ କାମିନୀ କହିଲା, "ମୁଁ ଆଉ ରହିବି ନାହିଁ । ମୋତେ ଅନ୍ଧ ମାମାଙ୍କ ଇସ୍କୁଲରେ ରଖିଦେଇ ଆସ ।" ବୁଢ଼ୀ ଏ ପର୍ଯ୍ୟନ୍ତ ଚୁପ୍‌ଚାପ୍ ବସିଥିଲେ । କୁଠାଘରଦାରେ ନିଆଁ ପଡ଼ିଲା ପରି ହଠାତ୍ ଜଳି ଉଠିଲେ । କହିଲେ, "ଅନ୍ଧ ମାମା ଇସ୍କୁଲ୍, ମାମା, ମାମା ହେଉଛି, ଆଉ ଏହି ବାର ତେର ବରଷ ମାମା କୋଉଠି ଥିଲେ ? ଦିନେ ଆସି ଝିଅ କଥା ବୁଝିଲେ ନାହିଁ ? ଠୋକୀ ଖଣ୍ଡିକର କଥା ଦେଖ । ଥରକୁ ଥର ଦଶ ଥର ଏଇଟି ଏଇଟି ସେ ଏକାରକମ ଖୋସାମତି କରି ସାରିଲେଣି । ଏଡ଼େ ଅନ୍‌ବାଣ୍ଡୀ ଯେ, ସେହି ଏକ କଥା, ମୁଁ ରହିବି ନାହିଁ, ଅନ୍ଧ ଯିବି, ମୁଁ ରହିବି ନାହିଁ । ଆରେ ସତେ ତ ଏ ଦୁନିଆରେ ଯାର କରିବ ଭଲ, ସେହି ହେବ ଦୁଷମନ୍ । ପର କେବେ ଆପଣାର ହେଲାଣି ? କାଲେ, ତୁ ଚାଲିଗଲେ କଣ ଆମ କାମ ଅଟକି ରହିବ କି ? ମଲା, ଝିଅ ଥିଲେ କେତେ କାଉ ଆସିବେ ।" କାମିନୀ ଉତ୍ତରରେ କହିବାକୁ ଯାଉଥିଲା, "ଏଠି ବାରବର୍ଷକାଳ ତୁମେ କିଛି ବସେଇ ଖୁଆଉ ନ ଥିଲ, କି ମାମାଙ୍କ ଇସ୍କୁଲକୁ ଗଲେ ସେ ବସେଇ ଖୁଆଇବେ ନାହିଁ; ଆଉ ଝିଅ ଥିଲେ କାଉ ଆସିବେ ସତ, ସାଇତି ଯୁଇତି ରଖିବାକୁ ଆସିବେ ନାହିଁ ।" କିନ୍ତୁ ଏଡ଼େ ଦୁଃଖର ଦିନରେ ସୁଦ୍ଧା ସେ ନିଜର କର୍ତ୍ତବ୍ୟ ଭୁଲିଲା ନାହିଁ, କେବଳ ଚୁପ୍ କରି ରହିଲା । ବୃଦ୍ଧ ପଚାରିଲେ, 'କଣ କହୁଚୁ, କାମିନୀ ?' ବୁଢ଼ୀ ଧଡ଼ କରି ଉଠି ନିଜ ଘରେ ପଶିଲେ । କିଛିକ୍ଷଣ

ପରେ ପଧାନେ ଯାଇ ସ୍ତ୍ରୀକୁ ଏକପ୍ରକାର କାତର କଣ୍ଠରେ କହିଲେ, 'କାମିନୀ ଯିବ ବୋଲି ବାକସ ସଜାଡୁଛି ।' ବୁଢୀ ଚିଡ଼ିକରି କହିଲେ, "ମୁଁ କଣ ତାର ହାତ ଧରି ଅଟକେଇବି ? ଦେଖ, ମୁଁ ତୁମକୁ କହି ରଖୁଛି, ଆଜି ତାକୁ ଯେମିତି ପାରି ସେମିତି ତା ମାମା ପାଖରେ ଛାଡ଼ି ଆସିବ ।"

କିଛି ସମୟ ପରେ କାମିନୀ ବୁଢୀଙ୍କ ଘରକୁ ଗଲା ବୁଢୀଙ୍କଠୁଁ ବିଦାୟ ନେବାକୁ । କାତରକଣ୍ଠରେ କହିଲା, 'ବାବୁଆଣି, ମୁଁ ଯାଉଛି ।' ବୁଢୀ ତ ନିଆଁବାଣ । କହିଲେ, 'ତୋ ମୁହଁରେ ନିଆଁ ଲଗୁ ନାହିଁ, କାଠପାଳିଆ ଥିଲେ ତୋ ମୁହଁ ସିଧା କରି ଦେଇଥାନ୍ତି । କାଲୋ, ମତେ ବାବୁଆଣୀ ଡାକିବାକୁ ମୁଁ କେବେ ତତେ କହିଥିଲି ? ଯା ମୋ ଆଖି ଆଗରୁ ।' କାମିନୀ ସେଠୁ ଚାଲି-ଗଲାରୁ ସ୍ୱାମୀଙ୍କୁ ଡାକି କହିଲେ, "ତାର ଡାକଘରର 'ପାଶ' ବହିରେ ତାର ଦରମା ବାବଦ ୫୦୦୯ ଅଛି । ସେ 'ପାଶ' ବହି ତାକୁ ଦେଇଦିଅ । ତା ପରେ ନିଜେ ଉଠିଯାଇ ଯେଉଁ ନୂଆଶାଢୀ ହଳକ କିଣିଥିଲେ ଓ ଯେଉଁ ଯେଉଁ ଗହଣା ଗଢେଇଥିଲେ, ସେ ସବୁ ଆଣି ତା ବାକସ ଉପରେ ଦୁମ୍‌କରି ଫିଙ୍ଗି ଦେଇ କହିଲେ, "ଯାକୁ ସବୁ ତୋର କୋଉ ସଉତୁଣୀ ପାଇଁ ରଖିଯାଉଛୁ ? ଖବରଦାର, ଭଲଦଶା ଅଛି ତ ସବୁ ନେଇ ଯା ।" ଅଗତ୍ୟା ସେସବୁ କାମିନୀ ବାଧ ହୋଇ ବାକସରେ ରଖିଲା ।

ପଧାନେ କରେଷ୍ଟକୁ ଗଲାବେଳେ କାମିନୀକୁ ମିଶନ ଅନାଥାଶ୍ରମରେ ଛାଡ଼ିଦେଇ ଗଲେ । ସେ ବନଯାକ କରେଷ୍ଟରେ କେବଳ ଛଟପଟ କରିବାକୁ ଲାଗିଲେ । କୌଣସିମତେ କାମ ସାରି ସଞ୍ଜବେଳେ ଘରକୁ ଫେରି ଦେଖିଲେ, ନୂଆ ଚାକରାଣୀ ନିଯୁକ୍ତ ହୋଇଛି; କିନ୍ତୁ ବୁଢୀ ଖଟ ଉପରେ ମୁହଁମାଡ଼ି ପଡ଼ିଛନ୍ତି, ଲୁଗାପଟା ଛାଡ଼ି ପଧାନେ ଯାଇ ଖଟ ଉପରେ ବସିଲେ । ଦେଖିଲେ, ସ୍ତ୍ରୀଙ୍କର ଆଖି କାନ୍ଦି କାନ୍ଦି ଫୁଲିଛି । କହିଲେ, "ଅବଶ୍ୟ ପିଲାଟା ଚାଲିଯିବାରୁ ଘରଟା ଖାଲି ଖାଲି ଲାଗୁଛି; କିନ୍ତୁ କାନ୍ଦିବାର ଦରକାର ନାହିଁ ।" ବୁଢୀ ବୁଲିପଡ଼ି କହିଲେ,

# ବଡ଼ଲୋକ

"କିଏ କହୁଛି ମୁଁ କାନ୍ଦୁଛି ?" ଅଥଚ ଆଖିକୋଣରେ ସେତେବେଳକୁ ଲୁହ ଟଳ ଟଳ ହେଲାଣି । ଏକପ୍ରକାର ଚିତ୍କାର କରି କହିଲେ, "ମଲା ସେଇଠା କିଏ ଯେ ତା ପାଇଁ ମୁଁ କାନ୍ଦିବି ? ଏଡ଼େ ନିମକହାରାମ୍ ସେ, ଏକା କଥାକେ ଭୁଲିଗଲା ।' କିନ୍ତୁ ଦେଖ, ଖବରଦାର, ଫେର ଯଦି ତୁମେ 'ମିଶି' ଇସ୍କୁଲକୁ ଯାଅ, କି ତାକୁ ଆଣିବାକୁ ଚେଷ୍ଟାକର, ସେଦିନ ତୁମେ ଦେଖିବ, କି ମୁଁ ଦେଖିବି ।"

ଦେଖୁ ଦେଖୁ ଦିନ କଟିଗଲା । 'ବଡ଼ଦିନ' ଆସି ପହଞ୍ଚିଲା । ଯଦିବା ପଧାନଙ୍କ ଇଚ୍ଛା ହେଉଥିଲା ସେ ଦିନ ଇସ୍କୁଲକୁ ଯାଇ କାମିନୀକୁ କିଛି ଦେଇ ଆସିବେ, କାମିନୀର ଯିବା ଦିନ ସ୍କୁଲକୁ ଯିବା ସମ୍ବନ୍ଧରେ ଯେଉଁ ସତର୍କବାଣୀ ଶୁଣିଥିଲେ, ତାର ଭୟରେ ସେ ଦିନ କିଛି ନେଇ ଦେଇ ଆସିବାକୁ ସାହସ ହେଲା ନାହିଁ । ସେଦିନ ସଞ୍ଜବେଳେ ବୁଢ଼ୀ କହିଲେ, "ସେବର୍ଷର ଯେଉଁ ଝିଅ ସ୍କୁଲକୁ ଯାଏ, ସେ କହୁଥିଲା କାମିନୀ ଇସ୍କୁଲରେ ଖଟି ଖଟି କଳାକାଠ ହୋଇ-ଗଲାଣି । ସକାଳୁ ସଞ୍ଜ ପର୍ଯ୍ୟନ୍ତ ହାଡ଼ଭଙ୍ଗା ଖଟୁଣି । ତିରିଶ ଜଣ ପିଲାଙ୍କର ରନ୍ଧାବଢ଼ା କରେ । ଅଚ୍ଛା ହୋଇଛି, ଯେମିତି ଯାଇଛି ସେମିତି ତାର ଫଳ ପାଉ । ଆଚ୍ଛା, ସତରେ କଣ ସେ କଳାକାଠ ହୋଇଗଲାଣି ?" ବୁଢ଼ା କହିଲେ, ତୁମେ ସେଦିନ ମୋତେ ସେଠିକି ଯିବାକୁ ମନା କଲ, ସେ ଦିନଠୁଁ ମୁଁ ତାକୁ ଦେଖି ନାହିଁ ।" ବୁଢ଼ୀ ଚିଡ଼ିକରି କହିଲେ, "କେମିତିକା ମଣିଷ ମ ତୁମେ ? କଥା ଶୁଣ, ମୁଁ କୁଆଡ଼େ କୋଉ ଦିନ ଯାଙ୍କୁ ଯିବାକୁ ମନା କରିଥିଲି ।" ବୁଢ଼ା ଭୟରେ ଆଉ ସେ ବିଷୟରେ କିଛି ଉଚ୍ଚବାଚ୍ୟ କଲେ ନାହିଁ । ବୁଢ଼ୀ ପୁଣି କହିଲେ, "ଆଜି ଏଡ଼େ ବଡ଼ ଦିନଟା ଗଲା, କିଛି ଯାଇ ଦେଇ ଆସିଲ ନାହିଁ ?" ଉତ୍ତରରେ ବୁଢ଼ା କହିଲେ, "ଆଜି ଦିନ ତ ଗଲାଣି, ନୂଆ ବରଷ ଦିନ ଯାଇ ଦେଇ ଆସିବି ।"

ନୂଆ ବରଷ ଆସିଲା । କିନ୍ତୁ ବୁଢ଼ା ବୁଢ଼ୀ କାମିନୀ ସକାଶେ ଯାହା କରିବେ ବୋଲି ଭାବିଥିଲେ, ତାହା ଆଉ ହୋଇ ପାରିଲା ନାହିଁ । ବଡ଼ଦିନ ଯିବାର ଦୁଇଦିନ ପରେ ବୁଢ଼ାଙ୍କୁ ଜ୍ୱର ହେଲା ଏବଂ ନୂଆ ବରଷ ଦିନେ ଦୁଇଦିନ

ଅଛି, ଦେହରେ ବସନ୍ତ ବାହାରିଲା । ଯେ ବୃଦ୍ଧରଅଣୀ କାମ କରୁଥିଲା, ଏ ବିପଦ ଦେଖି ସେ ମଧ୍ୟ ତା ପିଲାଙ୍କ ଦେହ ଭଲ ନାହିଁ ବୋଲି କହି ଆଉ ଆସିଲା ନାହିଁ । ଘରେ ଜଣେ ଲୋକ ନାହିଁ, ଯେ ଏ ବିପଦରେ ସାହାଯ୍ୟ କରିବ । ବାହାରର ଲୋକଙ୍କ ମଧ୍ୟରୁ ଦିନ ଭିତରେ ଥରେ ଦୁଇ ଥର ଡାକ୍ତର ଆସି ଦେଖିଯାଏ । ଘରର ଯୋଉ ଜିନିଷ ଯୋଉଠି ପଡିଛି, ସେଇଠି ପଡି ରହିଲା । ବୁଢୀ ଖିଆପିଆ ଛାଡି ସ୍ୱାମୀଙ୍କ ପାଖରେ ବସି ରହିଲେ । ଆଖିରେ ନିଦ ନାହିଁ, ଅଛି କେବଳ ବ୍ୟାକୁଳତା ଏବଂ ଭବିଷ୍ୟତର ଆଶଙ୍କା । କେହି ଗୋଟିଏ ପଚାରିବାକୁ ନାହିଁ । ଯେଉଁ ଆଡ଼କୁ ଅନେଇଲେ ସେ ଆଡ଼ ଅନ୍ଧାର ।

ଆଜି ତା ୩୧ ରିଖ ଡିସେମ୍ବର । "ଉଜାଗର ରାତି ।" ରାତି ଉଜାଗର ରହି ସାହିର ଆବାଳବୃଦ୍ଧବନିତା ପୁରୁଣା ବର୍ଷକୁ ବିଦାୟ ଦେବେ, ନୂଆବର୍ଷର ଅଭିନନ୍ଦନ କରିବେ । ସେଦିନ ସକାଳୁ ସାହିର ଯୁବକମାନେ ଗ୍ରାମର ଉପାସନା-ମନ୍ଦିର ସଜାଇବାରେ ବ୍ୟସ୍ତ, ଘରେ ଘରେ ମା ଭଉଣୀମାନେ ପିଠାପଣାରେ ଲାଗିଛନ୍ତି, ମୁରବିମାନେ ଛୁଟି ପାଇ ଏକାଠି ବସି ଦୁଃଖସୁଖ ହେଉଛନ୍ତି । ଆନନ୍ଦ ସବୁଆଡେ । ଆଜି ଏ ଆନନ୍ଦର ଦିନରେ ପଧାନଙ୍କ ଘର ସାହିର କଣରେ ଏକକରିକିଆ ହୋଇ ପଡିଛି । ଆଜି ସ୍ତିତି ପାହାନ୍ତାରୁ ପଧାନେ ଜରରେ ପ୍ରଳାପ ବକୁଛନ୍ତି । ବୁଢୀଙ୍କ ମୁଣ୍ଡରେ ଆକାଶ ଭାଙ୍ଗି ପଡୁଛି । ଆଉ ସେ ମୁହ୍ୟମୁହ୍ୟ କ୍ରନ୍ଦନର ଉଚ୍ଛ୍ୱାସ ନାହିଁ, ଭିତରେ ଶୋକ ପ୍ରସ୍ତରକଠିନ ବରଫ ପରି ଘନୀଭୂତ ହେଉଛି—ଆବରଣ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇପାରେ, କିନ୍ତୁ ଦ୍ରାବିଗଳିତ ଧାରା ବହି ପ୍ରାଣର ଏ ଗୁରୁଭାର ଲାଘବ କରିବ ନାହିଁ । ବୁଢାଙ୍କ ଗୋଡ଼ ପାଖରେ ବୁଢୀ ହାତଗୋଡ ଯୋଡି ଚୁପ୍‌ଚାପ ବସିଛନ୍ତି, ସମୟର ଜ୍ଞାନ ନାହିଁ । କାମିନୀ ଊର୍ଦ୍ଧ୍ୱଶ୍ୱାସରେ ଆସି ଘର ଭିତରେ ପଶିଗଲା । ବୁଢୀଙ୍କି କହିଲା, 'ମା, ବାବାଙ୍କର ଏତେ ସଙ୍କଟ ହେଲାଣି, ମତେ ଟିକେ ଖବର ଦେଲ ନାହିଁ ? ତୁମେ ଭାବନା କର ନାହିଁ, ଈଶ୍ୱର ଏତେ ନିର୍ଦ୍ଦୟ ହେବେ ନାହିଁ ।' ଉତ୍ତରରେ ବୁଢୀ 'କାମି ଲୋ' କହି କାମିନୀ କୋଳରେ ମୁର୍ଚ୍ଛା ଗଲେ । ବୁଢୀଙ୍କର ଚେତା

# ବଜ୍ରଲେଖ

କସ୍ୱର ଖୁଆଇ ପିଆଇ ବଶ୍ରାମର ଅଯୋଜନ କରଦେଇ ଆସି କାମିନୀ ବୁଢାଙ୍କ ଶୁଶ୍ରୂଷାରେ ଲାଗିଗଲା । ତାର ସେବାନପୁଣ ହସ୍ତରେ ଘରର କଲ୍ୟାଣ ଫେର ଆସିଲା । ପନ୍ଦର ଦନର ଅକ୍ଳାନ୍ତ ପରଶ୍ରମରେ ବୁଢା ସେ ଯାତ୍ରା ବଞ୍ଚଗଲେ । କନ୍ତୁ ଅତ୍ୟଧିକ ପରଶ୍ରମରେ ସେବାର ଏ ଜୀବନ୍ତ ମୂର୍ତ୍ତି ଦୁର୍ବଳ ଭାଙ୍ଗି ପଡଲା । କାମିନୀ ଶଯ୍ୟାଶାୟୀ ହେଲା । ବୁଢାବୁଢୀ ବଛଣାର ଦୁଇପାଖରେ ବସି ତାର ଦୁଇଟି ଶୀର୍ଣ୍ଣ ଶିଥିଳ ହାତ ସେମାନଙ୍କର କୋଳ ଉପରେ ରଖି କହୁଲେ, ତତେ ଆଉ ଯିବାକୁ ଦେବା ନାହିଁ ।" ଶ୍ରାନ୍ତବଜଡତ ସ୍ୱରରେ କାମିନୀ କହୁଲା, "ତୁଲସୀପୁରର କବରକୁ ବ ଛାଡବ ନାହିଁ ?" ପଧାନେ କହୁଲେ, "ଈଶ୍ୱର ଯେତେବେଳେ ପୁଣି ଆଣି ତୋତେ ଆମ କୋଳରେ ଦେଇଛନ୍ତି, ସେ ଏତେ ଶୀଘ୍ର ସେ କୋଳ ଖାଲି କରବେ ନାହିଁ ।" ତା ପରେ ଦୁହେଁ ଦେଖିଲେ, ଶ୍ରାନ୍ତ ଆଖି ଦୁଇଟି ବୁଜି ହୋଇ ପଡଛି, ମ୍ଳାନମୁହଁରେ ହସଟିକ ଲାଗି ରହୁଛି, କ୍ଲାନ୍ତଶିଶୁ ପର ସେମାନଙ୍କର କୋଳରେ ହାତ ରଖି କାମିନୀ ନଶ୍ଚିନ୍ତ ହୋଇ ଶୋଇଛି ।



# ଖିପିଲ୍‌ର ଦଣ୍ଡ

ପାରସ୍ୟ ରାଜା ସାହ୍‌ପେସ୍ ଗୋଟିଏ ପ୍ରକାଣ୍ଡ ଘର ବନାଇବାକୁ ଇଚ୍ଛା କରିଥିଲେ ଏବଂ ରାଜ୍ୟର ସବୁଠାରୁ ବଡ଼ କାରିଗର ଖିପିଲ୍‌କୁ ଏହି ଘର ବନାଇବାକୁ ହୁକୁମ ଦେଲେ । ଅନେକ ଅନେକ ବର୍ଷ ବିତିଗଲା, ତଥାପି ଘରବନା କାମ ଶେଷ ହେଲା ନାହିଁ । ନଈକୂଳରେ ଯେଉଁଠି ଏହି ଘର ବନା ହେଉଥିଲା, ଦିନେ ସାହ୍‌ପେସ୍ ସେଠିକି ଘର ଦେଖିବାକୁ ଗଲେ । ଦେଖିଲେ, ଖିପିଲ୍ ଗୋଟାଏ ମାର୍ବୁଲ ପଥର ଉପରେ ବସିଛି । ଛୋଟବଡ଼ ଅନେକ ମାର୍ବୁଲ ପଥର ଏଣେ ତେଣେ ଛତରେଇ ହୋଇ ପଡ଼ିଛି, ଖିପିଲ୍ ଚାରିପାଖରେ ମିସ୍ତ୍ରି, ପଥରକଟାଳୀ ଓ ମୂଲିଆମାନେ ମହା ଆରାମରେ ଲମ୍ବଲମ୍ବ ହୋଇ ପଡ଼ିଛନ୍ତି । ଉପଭୋଗର ତୃପ୍ତି ଦେଖାଉଛି ମୁହଁର ମୃଦୁହାସ୍ୟର ବକ୍ରରେଖା । କାରଣ ଅଭ୍ୟାସ ଅନୁସାରେ ଖିପିଲ୍ ସେମାନଙ୍କୁ ନାନା ଅଦ୍ଭୁତ ଗଳ୍ପ ଶୁଣାଉଛି ଏବଂ ଏହି ଗଳ୍ପସବୁକୁ ମଝିରେ ମଝିରେ କାବ୍ୟକବିତାର ଅଂଶମାନ ଉଦ୍ଧୃତ କରି ସରସ କରୁଛି ।

ରାଜା ସେତିକିବେଳେ ପହଞ୍ଚିଗଲେ ଏବଂ ଖିପିଲ୍‌କୁ ସମ୍ବୋଧନ କରି କହିଲେ, "ଖିପିଲ୍, କେଉଁଠି ରାଜବାଟି ନିର୍ମିତ ହୋଇଅଛି ଦେଖାଅ; କାରଣ ତାହାର ସୌନ୍ଦର୍ଯ୍ୟରେ ଦର୍ଶନଲାଳସା ପରିତୃପ୍ତ କରିବାକୁ ଆଜି ଆମ୍ଭେ ଇଚ୍ଛା କରୁଅଛୁ ।"

ଖିପିଲ୍ ସାହ୍‌ପେସ୍‌ଙ୍କ ସମ୍ମୁଖରେ ଆପଣାକୁ କୁଣ୍ଠିତ ଏବଂ ଅବନତ କରି କହିଲା, "ହେ ବନ୍ଦୁକଆର ମାଲିକ, ରାଜଅଟ୍ଟାଳିକା ଏଇଟି ଉତ୍‌ଥିତ ହୋଇଛି,

# ଖିପିଲ୍‌ର ଦଣ୍ଡ

ଏଇଟି ସେଇଟି ମଣିମାଙ୍କର ପାଦସ୍ପର୍ଶରେ ଧରଣୀ କୃତାର୍ଥ ଏବଂ ଅମୃତ ଭୂଷଣରେ ଏ ଦୀନ ଦାସର କଣ୍ଠଧାରଣ ସାର୍ଥକ । ଗୃହନିର୍ମାଣ ପୂର୍ବରୁ ଉପଯୁକ୍ତ ସ୍ଥାନ ନିର୍ଣ୍ଣୟ କରିବା ନିର୍ମାଣକାରୀର ପ୍ରଧାନ ଏବଂ ପ୍ରଥମ ପ୍ରୟୋଜନୀୟ ବିଷୟ । ଏ ସ୍ଥାନ ଯେ ଉପଯୁକ୍ତ, ତହିଁରେ ସନ୍ଦେହ ନାହିଁ । ଏ ସ୍ଥାନରେ ନିର୍ମିତ ଗୃହ ଯେ କେବଳ କ୍ଷିତି ଅପ୍ ତେଜ ମରୁତ୍ ଏବଂ ବ୍ୟୋମ ଉପରେ ଆପଣାର ଆଧିପତ୍ୟ ବିସ୍ତାର କରିବ ତାହା ନୁହେଁ, ଏହାର ନିର୍ମାଣକୌଶଳର ଖ୍ୟାତି ଶୁଣି ଦୂରଦୂରାନ୍ତରର ରାଜା ଏବଂ ସୁଲତାନମାନେ ହିଂସାରେ ଜଳିପୋଡ଼ି ମରିବେ ଏବଂ ହେ ପାରସ୍ୟର ଭାଗ୍ୟବିଧାତା, ଏହି ନିର୍ମିତ ଗୃହର ଖ୍ୟାତି ପରିବ୍ରାଜକମାନଙ୍କ ମୁଖରେ ଲାଗି ରହିବ ଏବଂ କବିମାନଙ୍କର କଳ୍ପନାର ଶ୍ରେଷ୍ଠ ସାମଗ୍ରୀ ହେବ ।”

ସାହ୍ନପେସ୍ ଟିକେ ହସିଲେ ଏବଂ କହିଲେ, “ସ୍ଥାନଟି ଚମତ୍କାର । ଆମେ ତୁମ୍ଭ ଭାସ୍କରବୁଦ୍ଧିର ପ୍ରଶଂସା ନ କରି ରହିପାରୁ ନାହୁଁ ଏବଂ ତହିଁ ସଙ୍ଗେ ସଙ୍ଗେ କବି ଇବ୍ନ ବସ୍‌ରାକଙ୍କର ଜ୍ଞାନଗର୍ଭ ଉକ୍ତିର ମଧ୍ୟ ପ୍ରଶଂସା ନ କରି ରହିପାରୁ ନାହୁଁ , ଯେଉଁଟି ସେ କହିଛନ୍ତି—

ଧର୍ମ ଯେଉଁଠାରେ କେବେ ନ ପାରଇ ରହି,  
ନିଶ୍ଚୟ ନିଶ୍ଚୟ, ଭାଇ,  
ତାର ପୂଜା ପାଇଁ  
ମହାର୍ଘ ମନ୍ଦିର ଲୋକେ ତୋଳିବେ ରେ ତହିଁ ।  
ଦିନଯ ରଜନୀ ତହିଁ ଝଞ୍ଜଘଣ୍ଟା ଧ୍ୱନି,  
ତାର ପୂଜାର ଆରତି  
ଉଠିବ ରେ ନିତି  
( ଯହିଁ ) ମୂକ ରହିଥାଏ ଧର୍ମ ଦିବସ ରଜନୀ ।”

ତା ପରେ କହିଲେ, “ଖିପିଲ୍ , ଗୋଟିଏ ଚଷା ଥିଲା, ସେ ବିହନ ବୁଣିବା ସମୟରେ ହେଳା କରି ବିହନ ବୁଣିଲା ନାହିଁ । ଯେତେବେଳେ ଫସଲ ଅମଳ

କରିବାର ସମୟ ଉପସ୍ଥିତ ହେଲା, ନିଜ ଜମିର ଉର୍ବରତା ସମ୍ବନ୍ଧରେ ଗୀତ ଗାଇବୁଲିଲା ଏବଂ ଜମି ଯେ ଉର୍ବର, ତାର ପ୍ରମାଣ ସ୍ୱରୂପ ଯାହାକୁ ପାଇଲା, ତାକୁ ନେଇ ଜମି ଉପରେ ବଢିଉଠିଥିବା ଅପର୍ଯ୍ୟାପ୍ତ କଣ୍ଟା ଏବଂ ଘାସବଣ ଦେଖାଇ ବୁଲିଲା । ବର୍ତ୍ତମାନ ହେ ଶିଳ୍ପୀ, ଏହି ସର୍ବାଙ୍ଗ-ସୁସମ୍ପନ୍ନ ପ୍ରାସାଦର ସୌନ୍ଦର୍ଯ୍ୟ ଆମ୍ଭ ସମ୍ମୁଖରେ ଉଦ୍‌ଘାଟିତ କର ଏବଂ ତୁମ୍ଭର ରଚନା-କୌଶଳ ପ୍ରଦର୍ଶନ କରି ଆମ୍ଭର ନୟନ ରଞ୍ଜନ କର ।''

ଉତ୍ତରରେ ଖିପିଲ୍ କହିଲା, ''ମହିମାଙ୍କର ଇଚ୍ଛାହିଁ ମୋ ନିକଟରେ ଆଦେଶ ।''

ଖିପିଲ୍ ସାହେବଙ୍କୁ ନେଇ ରାଜପ୍ରାସାଦର ଅସମାପ୍ତ ରଙ୍ଗମହାଲ ପ୍ରାଙ୍ଗଣ ଏବଂ ଛାଦବିହୀନ କକ୍ଷ ସବୁର ମଧ୍ୟଦେଇ ଏବଂ ଅର୍ଦ୍ଧସମାପ୍ତ ପ୍ରସ୍ତର ସ୍ତମ୍ଭ ସବୁର ପାଖ ଦେଇ ଅଗ୍ରସର ହେଲା । ଏଯାବତ୍ ସେ ରାଜାଙ୍କର ଯେ ସବୁ କଥା ଶୁଣିଥିଲା, ସେଥିରେ ଟିକେ ହତବୁଦ୍ଧି ହୋଇଯାଇଥିଲା । କିନ୍ତୁ ବର୍ତ୍ତମାନ ରାଜା ତାକୁ ପ୍ରଶଂସାରେ ଆକାଶକୁ ଟେକିଦେଲେ; ତାର ଶିଳ୍ପ-ନୈପୁଣ୍ୟ, ବିରାଟ କାର୍ଯ୍ୟ ଏବଂ ସେହି କାର୍ଯ୍ୟ ସମାପନ କରିବାରେ ଯେ ଅତ୍ୟଳ୍ପ ସମୟ ସେ ବ୍ୟୟ କରିଥିଲା, ଏ ସବୁର ଯଥେଷ୍ଟ ସାଧୁବାଦ କରିବାକୁ ଲାଗିଲେ । ଜଣାଗଲା, ଯେପରି ତାର କାର୍ଯ୍ୟରେ ତ୍ରୁଟି ଏବଂ ଅବହେଳା ପ୍ରତି ରାଜାଙ୍କର ଦୃଷ୍ଟି ନାହିଁ ।

ଅଳ୍ପ ସମୟ ପରେ ସେମାନେ ଘୁରିଣିଆ ସିଡି ଦେଇ ମାର୍ବଲ ପଥରର ଛାତ ଉପରକୁ ଆସିଲେ । ରାଜା କହିଲେ, 'ଖିପିଲ୍; ତୁମ୍ଭେ ଆମ୍ଭର ଗୃହ ନିର୍ମାଣ କାର୍ଯ୍ୟରେ ଏପ୍ରକାର ବିଶ୍ୱସ୍ତତା ଏବଂ ତତ୍ପରତା ଦେଖାଇଅଛ ଯେ, ତାହାର ପୁରସ୍କାର ସ୍ୱରୂପ ଆମ୍ଭେ ତୁମ୍ଭଙ୍କୁ ସମସ୍ତଙ୍କ ସମ୍ମୁଖରେ ସମ୍ମାନିତ କରିବା । ବର୍ତ୍ତମାନ ପରିଦର୍ଶନ କଲାବେଳେ ତୁମ୍ଭେ ଆମ୍ଭର ପଛରେ ନ ରହି ସମ୍ମୁଖରେ ରହିବ ।

## ଖିପିଲ୍‌ର ଦଣ୍ଡ

ରାଜାଙ୍କ ସମ୍ମୁଖରେ ବୁଲିବାର ସୌଭାଗ୍ୟ ପାଇ ଖିପିଲ୍ ଆପଣାକୁ ଅତ୍ୟନ୍ତ ସମ୍ମାନିତ ମନେକଲା । ଏହାପରେ ଛାଦ ଉପରେ ଅଳ୍ପଦୂର ଯାଇ ଖିପିଲ୍ ହଠାତ୍ ଅଟକିଗଲା ଏବଂ କହିଲା, "ମହିମା, ଜଣାଯାଉଛି ଯେପରି ଛାତର ଏହି ଅଂଶଟାରେ ଟିକେ ଫାଙ୍କ୍ ରହିଯାଇଛି । ଅତଏବ ଏ ଦିଗରେ ଆଉ ବେଶି ଦୂର ଅଗ୍ରସର ହେବା ଉଚିତ ନୁହେଁ ।"

ସାହପେସ୍ ଉତ୍ତର ଦେଲେ, "ଏ ଗୃହର କୌଣସି ଅଂଶ ଅପୂର୍ଣ୍ଣ ନାହିଁ, ସମସ୍ତ ଅଂଶଇ ସୁସମ୍ପନ୍ନ; ଆଉ ଅଗ୍ରସର ହେବାରେ ତୁମେ ଯେ ତିଳେମାତ୍ର ବିଳମ୍ବ କରିବ, ଏହା ଆମ୍ଭର ଇଚ୍ଛା ନୁହେଁ ।"

ଖିପିଲ୍ ଭୟରେ ଏକରକମ ଚିତ୍କାର କରି କହିଲା, "ମହାରାଜ, ଏ ଯେ ବଡ଼ ବେଶି ରକମର ଫାଙ୍କ୍ ଏବଂ ଅତି ସ୍ପଷ୍ଟ, ମହିମାଙ୍କର ପ୍ରାସାଦର ଏ ଅଂଶ ଏକାବେଳେକେ ଅସମ୍ପୂର୍ଣ୍ଣ ।"

ସାହପେସ୍ ଉତ୍ତର ଦେଲେ, "ଖିପିଲ୍, ଆମ୍ଭେ ଏ ଗୃହର କୌଣସି ଏକ ଅଂଶ ଅନ୍ୟ ଅଂଶ ମଧ୍ୟରେ ପ୍ରଭେଦ ଦେଖୁ ନାହୁଁ । ଏହାର ପ୍ରତ୍ୟେକ ଅଂଶ ସୁନ୍ଦର ଏବଂ ସୁଗଠିତ । ବିଶେଷତଃ ଯେଉଁ ଗୃହ ନିର୍ମାଣ କରିବାକୁ ବହୁ ବରଷ ଲାଗିଛି, ତାହାର କୌଣସି ଅଂଶ ଅସମ୍ପୂର୍ଣ୍ଣ ରହି ନ ପାରେ । ଅତଏବ ଆମ୍ଭର ଆଦେଶ ଅନୁସାରେ ଅଗ୍ରସର ହୁଅ ।" ତଥାପି ଖିପିଲ୍ ଇତସ୍ତତଃ କରିବାକୁ ଲାଗିଲା । କାରଣ ସମ୍ମୁଖର ବ୍ୟବଧାନ ଅତିକ୍ରମ କରିବା ଖିପିଲ୍‌ର ସାଧ୍ୟାୟତ୍ତ ନ ଥିଲା । ତଳେ ମସ୍ତବଡ଼ ଖାଲ ପାଣିରେ ଭରା, ଖିପିଲ୍ ପହଁରିବା ଜାଣି ନ ଥିଲା । କିନ୍ତୁ ସାହପେସ୍ ନିଜର ଶରୀରରକ୍ଷୀ ଧନୁର୍ଦ୍ଧାରୀମାନଙ୍କୁ ଖିପିଲ୍‌କୁ ଲକ୍ଷ୍ୟ କରି ଧନୁ କଷିବାକୁ ହୁକୁମ ଦେଲେ । ଖିପିଲ୍ ତଡ଼ବଡ଼ କରି ଆଗକୁ ବଢିଲା, ଫାଙ୍କରେ ଗଳି ପଡିଲା ଏବଂ ଏକଦମ୍ ପାଣିର ତଳକୁ ବୋଲି ବୁଡିଗଲା । ଦ୍ୱିତୀୟ ଥର ଯେତେବେଳେ ଉବେଇ ଟୁବେଇ ହୋଇ ଉଠିଲା, ତାକୁ କୂଳକୁ ଟାଣିଆଣିଲେ । ସେତେବେଳକୁ ସେ ଥରୁଛି ପଡି, ଭୟରେ ଏବଂ ଶୀତରେ ଦାନ୍ତକୁ ଦାନ୍ତ

ବାଇଯାଉଛି । ସାହପେସ୍ ଖିପିଲ୍‌ର ପ୍ରଶଂଷା କରି କହିଲେ, "ଖିପିଲ୍, ଅନ-ପେକ୍ଷିତ ଭାବରେ ଗାଧୋଇବା ପାଇଁ ଅତି ଚମତ୍କାର କୌଶଳ କରିଛ । ପ୍ରତିଦିନ କଥା କହି କହି କ୍ଲାନ୍ତ ହୋଇଗଲେ ଏହିପରି ପୁରସ୍କାର ଯେପରି ପାଅ, ତାହାର ବନ୍ଦୋବସ୍ତ ଆମ୍ଭେ କରିଦେବା ।"

ତା ପରେ ଖାସଦରବାରକୁ ଯିବାକୁ ଖିପିଲ୍‌କୁ ଆଦେଶ ଦେଲେ । ସେଠି ପହଞ୍ଚି ସାହପେସ୍ କହିଲେ, "ଖିପିଲ୍, ତୁମ୍ଭର କାର୍ଯ୍ୟ ଦେଖି ଆମ୍ଭେ ଯେ ଯଥୋଚିତ-ନାସ୍ତି ସନ୍ତୁଷ୍ଟ ହୋଇଅଛୁ ଏବଂ ତାହାକୁ ଯେ ଅତ୍ୟନ୍ତ ଆନନ୍ଦର ସହିତ ଅନୁ-ମୋଦନ କରୁଅଛୁ, ତାହାର ପ୍ରମାଣ ଦେବା ନିମନ୍ତେ ଉପସ୍ଥିତ ଲୋକମାନଙ୍କ ସମ୍ମୁଖରେ ତୁମ୍ଭକୁ ପୁରସ୍କୃତ କରିବା । ଏହି ଦରବାର ଗୃହରେ ଆମ୍ଭ ନିମନ୍ତେ ଏହି ଯେଉଁ ଶଙ୍ଖମଲ ପଥରର ସିଂହାସନ ନିର୍ମିତ କରିଅଛ, ଆମ୍ଭର ଉପସ୍ଥିତି ସତ୍ତ୍ୱେ ତୁମ୍ଭକୁ ତାହା ଉପରେ ପ୍ରଥମ କରି ବସିବାକୁ ଆମ୍ଭେ ଅନୁମତି ଦେଉଛୁ ।" ଖିପିଲ୍ ଚଞ୍ଚଳ କରି କହି ଉଠିଲା, "ସିଂହାସନ ଏ ପର୍ଯ୍ୟନ୍ତ ପ୍ରସ୍ତୁତ ହୋଇ ନାହିଁ ।" ସାହପେସ୍ ବିରକ୍ତ ହୋଇ କହିଲେ, "ଯଦି ତାହା ହୋଇ ନ ଥାଏ, ତାହାହେଲେ ତୋର ମୁହଁର ବଡ଼ ବଡ଼ କଥା ସକାଶେ ତୋତେ ଏହି ପଥର ଚଟାଣ ଉପରେ ପିଟି ଲମ୍ବ କରିଦେବା ।" ଖିପିଲ୍ କହିଲା, "ହେ ସର୍ବସଦ୍‌ଗୁଣା-ଲଙ୍କୃତ ମହିମାମଣ୍ଡିତ ମହାରାଜ, ଅନ୍ଧ ମୁଁ ପ୍ରଥମ କରି ଦେଖିପାରି ନ ଥିଲି; ମଣିମାଙ୍କର ସିଂହାସନ ରତ୍ନପ୍ରଦୀପ ପରି ଏଇ ଯେ ସେଠି ଜଳୁଛି ପରା ।" ଖିପିଲ୍ ରାଜାଙ୍କ ଭୟରେ ଯେଉଁଠି ସିଂହାସନ ରହିବା କଥା, ସେଠିକି ଯାଇ ରାଜାଙ୍କ ଆଡ଼କୁ ଅନାଇ ଅନାଇ ଶୂନ୍ୟ ଉପରେ ଏପରି ଭାବରେ ବଙ୍କେଇ ବସିଲା, ଯେପରି କି ସତେ ଚଉକି ଉପରେ ବସିଛି ।" ମନେ ମନେ ଭାବିଲା, ରାଜାଙ୍କର ଇଚ୍ଛା କୌତୁକ କରିବାକୁ; ଅତଏବ ତାଙ୍କ ଇଚ୍ଛାରେ ବାଧା ଦେବା ନିରାପଦ ନୁହେଁ । ସାହପେସ୍ କହିଲେ, 'ତୁମ୍ଭେ ଆମ୍ଭ ନିମନ୍ତେ ଯେଉଁ ସିଂହାସନ ପ୍ରସ୍ତୁତ କରିଅଛ, ତାହା ଆମ୍ଭ ଇଚ୍ଛାର ଅନୁରୂପ ହୋଇଅଛି ଏବଂ ଆମ୍ଭେ ଯେ ଏହି ସିଂହାସନ ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇଅଛୁ, ତାହାର ନିଦର୍ଶନ

# ଖିପିଲ୍‌ର ଦଣ୍ଡ

ସ୍ୱରୂପ ତୁମ୍ଭଙ୍କୁ ଉକ୍ତ ସିଂହାସନ ଉପରେ ଦିବା ଦ୍ୱିପ୍ରହର ପର୍ଯ୍ୟନ୍ତ ବସି ରହିବାର ସମ୍ମାନ ପ୍ରଦାନ କଲୁ । କିନ୍ତୁ ଏହି ସମସ୍ତ ମଧ୍ୟରେ ତିଳ ପରିମାଣରେ ଏପାଖ ସେପାଖ ଘୁଞ୍ଚାଘୁଞ୍ଚି କରିବା ଦ୍ୱାରା ତୁମ୍ଭେ ଯଦି ଆପଣାକୁ ଏ ସମ୍ମାନର ଅଯୋଗ୍ୟ ବୋଲି ପ୍ରମାଣ କର, ତାହାହେଲେ ଆମ୍ଭର ଏହି ପଚାଶ ଜଣ ଶରୀରରକ୍ଷୀ ତୁମ୍ଭଙ୍କୁ ଶରବିଦ୍ଧ କରି ମାରିବେ ।”

ତତ୍ପରେ ରାଜା ନିଜର ଶରୀରରକ୍ଷୀଙ୍କ ମଧ୍ୟରୁ ପଚାଶ ଜଣଙ୍କୁ ଖିପିଲ୍ ପାଖରେ ଛାଡିଗଲେ । ସେମାନେ ଗୁଣରେ ଶରସଂଯୋଗ କରି ଖିପିଲକୁ ଲକ୍ଷ୍ୟକରି ଘେରି ଛିଡ଼ାହେଲେ । ତାଙ୍କ ଭୟରେ ଖିପିଲ ଟିକେ ହଲ୍‌ଚଲ୍ ହେବାକୁ ମଧ୍ୟ ସାହସ କଲା ନାହିଁ । ଖିପିଲ୍ ରାଜାଙ୍କ ସିଂହାସନ ଉପରେ ବସିଛି, ଏ ଖବର ସହରର ଚାରିଆଡ଼େ କୁଠାଗଦାରେ ନିଆଁ ଲାଗିଲା ପରି ବ୍ୟାପିଗଲା । ଉକ୍ତ ରାଜ-ବାଟୀର କାରିଗରମାନେ ଏବଂ ସହରର ଲୋକେ ପିମ୍ପୁଡ଼ି ପଲ ପରି ଆସି ଖିପିଲ୍‌କୁ ଘେରିଗଲେ । ଖିପିଲ୍‌କୁ ଶୂନ୍ୟ ଉପରେ ଚଉକିରେ ବସିଲା ପରି ଏବଂ ଶରୀର-ରକ୍ଷୀଙ୍କର ଧନୁଶର ଭୟରେ ଥରିବାର ଦେଖି ସେମାନେ ହସି ହସି ସେ ଘରର ଚଟାଣ ଉପରେ ଗଡିଗଲେ । ନିରୂପିତ ସମୟରେ ରାଜା ପୁଣି ସେଠାକୁ ଆସିଲେ । ଖିପିଲର ସେତେବେଳକୁ ହାତଗୋଡ଼ ଅବଶ ହୋଇଗଲାଣି । ସାହୁପେସ୍ କହିଲେ, “ଖିପିଲ, ତୁମ୍ଭର ସ୍ଥାନ ଆଜି ରାଜ୍ୟର ସମସ୍ତ ଲୋକଙ୍କ ଉପରେ ଏବଂ ଏ ସମ୍ମାନ ତୁମ୍ଭେ ନିଜର ଯୋଗ୍ୟତା ସକାଶୁ ଅର୍ଜନ କରିଅଛ; କାରଣ ଆଜି ତୁମ୍ଭେ ପ୍ରମାଣ କରିଅଛ ଯେ, ଯାହା ତୁମ୍ଭେ ତୁମ୍ଭ ପ୍ରଭୁଙ୍କ ସକାଶେ ପ୍ରସ୍ତୁତ କରିଅଛ, ତାହା ତୁମ୍ଭ ବ୍ୟବହାର ପକ୍ଷରେ ମଧ୍ୟ ଉପଯୁକ୍ତ ହୋଇଅଛି ।” ତାପରେ ଯେଉଁଟି ପ୍ରମୋଦ ଉଦ୍ୟାନ ପର୍ଯ୍ୟନ୍ତ କାଢ଼ିବାକୁ ଆଦେଶ ଦେଇଥିଲେ, ସେତିକି ବାଟ କଟେଇ ନେବାକୁ ରାଜା ଖିପିଲ୍‌କୁ କହିଲେ । ଖିପିଲ୍‌ର ଅବସ୍ଥା ନ ଯଯୌ ନ ତସ୍ଥୌ—ଯେଉଁ ଅବସ୍ଥାରେ ହାତଗୋଡ଼ ଚଳିବାକୁ ଅନିଚ୍ଛୁକ; କିନ୍ତୁ କୌଣସିମତେ ସେମାନଙ୍କୁ ଟାଣି ଓଟାରି ନେବାକୁ ହୁଏ, ଯେଉଁ ଅବସ୍ଥାକୁ କବିଙ୍କ ଭାଷାରେ କୁହାଯାଇପାରେ—

# ସାମୟିକ

ଶକ୍ତି ଭସ୍ମାବହ୍ନି ମୋତେ ପଛରୁ ଠେଲଇ,
ଆଗରେ ଓଗାଳେ ପଥ
ନିକଟ ଭବିଷ୍ୟତର ବିଭୀଷିକା-ଛାଇ ।

ସେମାନେ ଆସି ଉଦ୍ୟାନରେ ଉପସ୍ଥିତ ହେଲେ; କିନ୍ତୁ ଦେଖିଲି ବେଳକୁ ବଗିଚ୍ଚାଯାକ ଅଗସ୍ତି ଓ କଣ୍ଟାବୁଦାରେ ଭରି । ଫୁଂଆସ ସବୁ ଶୁଖିକରି ପଡ଼ିଛି । ଗୋଟିଏ ଭଲ ଜାତିର ଗଛ ଦେଖିବାକୁ ସାତ ସ୍ୱପନ । ଜାଗା ଦିଶୁଛି ଶୁଖିଲା ଠାଉ ଠାଉ, ଯେପରି ମରୁଭୂମି । ସାହ୍ନିପେସ୍ କହିଲେ, "ଖିପିଲ, ରାଜୋଦ୍ୟାନକୁ ଏ ଯେଉଁ ଚମତ୍କାର ଅବସ୍ଥାରେ ରଖିଛ, ତାହା ସକାଶେ ତୁମ୍ଭଙ୍କୁ ଯେ ଯଥେଷ୍ଟ ବୁଦ୍ଧି ଖରଚ କରିବାକୁ ହୋଇଛି, ସେଥିରେ ସନ୍ଦେହ ନାହିଁ । ଏଥି ନିମନ୍ତେ ଆମ୍ଭେ ତୁମ୍ଭ ନିକଟରେ ଏକପ୍ରକାର ଋଣୀ । ଆହା, ଝରଣାସବୁ କିପରି ଏ ସ୍ଥାନର ବାୟୁକୁ ଶୀତଳ କରି ରଖିଛି, ଦୃଶ୍ୟକୁ ମନୋ-ରମ ଏବଂ ସତେଜ କରିଛି ! ଆଉ ଏଥି ଯେଉଁସବୁ ଫୁଲ ଫୁଟିଛି, ଏ ତ ନନ୍ଦନର ପାରିଜାତ ! ଦୟାକରି ଏହି ଫୁଲର ଗୋଟିଏ ତୋଡ଼ା ପ୍ରସ୍ତୁତ କର ଏବଂ ଆଘ୍ରାଣ କରି ତାହାର ଗନ୍ଧ ଆମ୍ଭ ନିକଟରେ ବର୍ଣ୍ଣନା କର ।"

ଖିପିଲ୍ ରାଜାଙ୍କ ଆଦେଶ ଅନୁସାରେ ଗୋଛାଏ କଣ୍ଟା ଭାଙ୍ଗି ନାକ ଆଗରେ ଧରିଲା । ସରୁ ସରୁ ନରମ କଣ୍ଟା ନାକ ଭିତରେ ଅଳ୍ପ ବହୁତ ପଶିଯିବାରୁ ନାକ ସଲସଲ ହେଲା । କୁଣ୍ଡେଇବାର ଇଚ୍ଛା ଜାତ ହେଲା । ଇଚ୍ଛା ଅନଉ ଅନଉ ପ୍ରବଳ ହୋଇଉଠିଲା । ଶେଷକୁ ଏପରି ଅସମ୍ଭାଳ ହେଲା ଯେ, ଖିପିଲ ରାଜାଙ୍କ ସମ୍ମୁଖରେ ଥାଇ ମୁଦ୍ଧା ଏହି କଣ୍ଡୁୟନ ପ୍ରବୃତ୍ତି ପୂର୍ଣ୍ଣ କରିବାକୁ ଦ୍ୱିଧା କଲା ନାହିଁ । ରାଜା ମଧ୍ୟ କବିଙ୍କର ବାକ୍ୟ ଉଦ୍ଧୃତ କରି ତାକୁ ଶୁଙ୍ଘିବାକୁ ଏବଂ ଛିଙ୍କିବାକୁ ଉତ୍ସାହିତ କଲେ । ରାଜା କହିଲେ—

"ବାଳକ କୋମଳ-ମତି, ଅଧୀର ପ୍ରଣୟୀ,
ଉଭୟ ଅଟଇ ମୂର୍ଖ—ମନେ ହୁଏ ମୋର—

## ଫିଲିପ୍‌ର ଦଣ୍ଡ

ପୁଷ୍ପର ସୌରଭେ ଯେବେ ଦୁଃଖ ମୁଁ ଭୁଲଇ
(ଯେବେ) ଗନ୍ଧମଦସ୍ରରେ ହୁଏ ନିଦ୍ରାତୁର ଘୋର ।

ଯେ ପ୍ରେମ ଜାଗତ କରେ ଅନ୍ତରେ ମୋହର
କୁସୁମ ସ୍ତବକ, ନୁହେଁ ନାସା ଯୋଗ୍ୟ ତାର;
ପ୍ରସ୍ଫୁଟିତ ପୁଷ୍ପ ପରି ଶୁଚି ଓ ସୁନ୍ଦର
ଅଧର କି ଗଣ୍ଡସ୍ଥଳ ଦେଖିଛ କାହାର ?”

ରାଜା କହିଲେ, “ଫିଲିପ୍, କଣ କହୁଛ ? ମୁଁ ଠିକ୍ ଅଂଶଟି ଉଦ୍ଧୃତ କରିଛି ଏବଂ ତାହା ତୁମର ବର୍ତ୍ତମାନ ଅବସ୍ଥାର ଅନୁରୂପ ହୋଇଛି ଓ ତୁମର ମନର ଅବସ୍ଥାକୁ ବିଶଦ ଭାବରେ ପ୍ରକାଶ କରୁଛି, ନା ?” ଫିଲିପ୍ ଉତ୍ତର ଦେଲା, “ମହାରାଜ, ଆପଣ ଯାହା ଆବୃତ୍ତି କଲେ, ତାହାର ଚମତ୍କାରିତା ଅବର୍ଣ୍ଣନୀୟ ଏବଂ ଅର୍ଥ ଅତି ବ୍ୟାପକ; କିନ୍ତୁ ନାକ ମଳିବାରେ ଯେ ଆନନ୍ଦ, ସେ ବିଷୟରେ କିଛି ଉଲ୍ଲେଖ କରାହୋଇ ନାହିଁ ।” ସାହୁପେସ୍ ହସି ହସି କହିଲେ, “ଖବରଦାର, ନାକ ମଳିବା କିଛି ଭଲ କଥା ନୁହେଁ ଏବଂ ଭଦ୍ରଜନୋଚିତ ନୁହେଁ । ଏହି ଫୁଲର ତୋଡ଼ା ତୁମର ସ୍ତ୍ରୀକୁ ତୁମେ ଉପହାର ଦେଇପାର । ଏହା ପାଇଲେ ସେ ନିଶ୍ଚୟ ତୁମକୁ ଆଦରରେ ପୋଷି ପକାଇବ । ଆମ୍ଭେ ବର୍ତ୍ତମାନ ଏହି ତୋଡ଼ାକୁ ତୁମ ନାମରେ ତୁମ ସ୍ତ୍ରୀ କତିକୁ ପଠାଇଦେବା ଏବଂ ଖବର ଦେବା ଯେ ଫୁଲ ପହଞ୍ଚିବାର ଅନତିବିଳମ୍ବରେ ତୁମେ ମଧ୍ୟ ଯାଇ ପହଞ୍ଚିବ । ଆଉ ତୁମର ନାକର ଗଲୁ ସମ୍ବନ୍ଧରେ ମନେରଖ, ଯଦି କେବେ ସେ ଇଚ୍ଛା ତୁମକୁ ପ୍ରବଳ ଭାବରେ ଆକ୍ରମଣ କରେ, ସେ ପ୍ରବୃତ୍ତି ଚରିତାର୍ଥ କରିବାକୁ ତୁମର ହାତକୁ ବାରଣ କରାଗଲା; କିନ୍ତୁ ତୁମ ନିକଟରେ ଥିବା ଅନ୍ୟ କୌଣସି ଲୋକ ତୁମକୁ ସାହାଯ୍ୟ କରିପାରେ ।” ରାଜା ପ୍ରହରୀମାନଙ୍କୁ ନିଯୁକ୍ତ କରି ଫିଲିପ୍ ସହିତ ପଠାଇଲେ ଏବଂ ପୁନର୍ବାର ଉଦ୍ୟାନକୁ ଫେରିଆସିବାକୁ ସମୟ ନିରୂପଣ କଲେ ।

# ସାମସ୍ରିଂଭ

ନିରୁପିତ ସମୟରେ ଖିପିଲ୍ ଯେତେବେଳେ ଆସି ରାଜାଙ୍କ ସମ୍ମୁଖରେ ଛିଡ଼ାହେଲା, ଦେଖାଗଲା ମଉଳି ପଡ଼ିଛି, ବଡ ବିମର୍ଷ ଦେଖାଯାଉଛି । ଛିଭ କୁକୁରର ଜିଭ ପରି ପ୍ରାୟ ପାଟିରୁ ଓହଳି ପଡ଼ିଛି । ସେ ଦିଶୁଥିଲା ଯେପରି କିଏ ତାକୁ ଗୋଟାକେତେ ଖୁବ୍ ଛେଚିଛି । ରାଜା ପଚାରିଲେ, "ଖିପିଲ୍, ତୁମର ଫୁଲତୋଡ଼ା ଉପହାର କିପରି ଗୃହୀତ ହେଲା ।" ସେ ଉତ୍ତର ଦେଲା, "ମହାରାଜ, ମୋହର ସ୍ତ୍ରୀ ମୋତେ ଦେଖି ରାଗରେ ଗରଗର ହେଲା ଏବଂ ତାହାର ବ୍ୟବହାର ମୋ ପ୍ରତି ବଡ ଲଜ୍ଜାଜନକ ହୋଇଅଛି ।" ରାଜା ପଚାରିଲେ, "ଆଉ ତୁମର ନାକ ମର୍ଦ୍ଦନ କରିବା ବିଷୟରେ ଆମ୍ଭେ ଯେଉଁ ଅନୁଗ୍ରହ ପ୍ରଦର୍ଶନ କରିଥିଲୁ ?" ଖିପିଲ କହିଲା, "ମହାରାଜ, ମୁଁ ମୋ ନିକଟରେ ଯାହାକୁ ପାଇଲି, ଏ ବିଷୟରେ ତା ନିକଟରେ ମୋର ଦରଖାସ୍ତ ପେଶ କରିବାରେ କସୁର କରି ନାହିଁ । ସେମାନଙ୍କୁ ଯଥେଷ୍ଟ ଭଦ୍ରତାର ସହିତ ବହୁ ଅନୁନୟ ବିନୟ କଲି । କାରଣ ନାକ ମଳିବା ପାଇଁ ମୋ ପ୍ରାଣ ବ୍ୟାକୁଳିତ ହେଲା । ନାକମଳାର ଆନନ୍ଦ ପାଇବା ପାଇଁ ଗୋଟାଏ ସର୍ବଗ୍ରାସୀ ଇଚ୍ଛା ମୋ ଭିତରେ ଉନ୍ମତ୍ତ ହୋଇଉଠିଲା । ଆଉ, ସେମାନେ ମଧ ମୋତେ ମଳି ଦେଇଥିଲେ; କିନ୍ତୁ ମୋ ଦେହର ସେହିସବୁ ଅଂଶରେ ନୁହେଁ, ଯେଉଁ ସବୁ ମର୍ଦ୍ଦନ ଖୋଜୁଥିଲା, ମାତ୍ର ଯେଉଁସବୁ ଅଂଶ ମର୍ଦ୍ଦନକୁ ଘୃଣା କରୁଥିଲା ।" ସାହପେସ୍ ହସି ହସି କହିଲେ, "ଏ କଥା ବଡ ସତ୍ୟ ଯେ ରାଜାମାନଙ୍କର ବଦାନ୍ୟତା ସୂର୍ଯ୍ୟ ପରି ଅବା ଆକାଶରୁ ଯେଉଁ ବୃଷ୍ଟି ପଡେ, ତାହାର ପରି କେଉଁଟି ଶସ୍ୟ ବୃଦ୍ଧି କରେ, କେଉଁଟି ଅବା କଣ୍ଟା ଅଗର ଗଛର ସଂଖ୍ୟା ବଢାଏ । ଖିପିଲ୍, ତୁମ୍ଭେ ଗୋଟିଏ କଣ୍ଟାବୁଦା; ସେଥିପାଇଁ ଆମ୍ଭର ଅନୁଗ୍ରହ ତୁମ୍ଭର ଶାସ୍ତି ସ୍ୱରୂପ ହୋଇଛି ।"

ଏହିପରି ସମ୍ମାନ ଦେବା ଅବା ଅନୁଗ୍ରହ ପ୍ରଦର୍ଶନ କରିବା ଛଳରେ ରାଜା ଖିପିଲର ତାଡ଼ନା ବନ୍ଦକଲେ ନାହିଁ । ଦିନକର ଦିନରାତି ଖିପିଲ୍ ପିଇବାକୁ ପାଣି ନ ପାଇ ଧଇଁସଇଁ ହେଲା ରାଜାଙ୍କର ବଗିଚାରେ ଯେଉଁ ପାଣିର

# ଖିପିଲର୍ ଦଣ୍ଡ

ଝରଣ ତିଆରି କରିଥିଲା, ସେହି ଶୁଖିଲା ଝରଣା ପାଖରେ; କାରଣ ରାଜାଙ୍କର ଆଦେଶ ଅନୁସାରେ ସେହି ଶୁଷ୍କପ୍ରସ୍ରବଣରେ ତୃଷା ନିବାରଣ କରିବାର ସମ୍ମାନ ସେ ପାଇଥିଲା : ସାତଦିନ ସାତରାତି ବଗିଚାରେ ଗଛର ଡାଳ ପରି ଦୁଇ ହାତ ମେଲାଇ ଛିଡ଼ା ହୋଇ ରହିଲା; ଆଉ ପ୍ରତ୍ୟେକ ହାତରେ ଗୋଟାଏ ଲେଖାଏଁ ଡାଳିମ୍ବ ନୂଆ ହୋଇଥାଏ । ସହରରୁ ଲୋକମାନେ ଆସି ଏହି ଅଦ୍ଭୁତ ଡାଳିମ୍ବ ଗଛ ଦେଖିବାକୁ ଲାଗିଲେ । ଏହିପରି ରାଜାଙ୍କର ଜ୍ଞାନବୁଦ୍ଧିର ପ୍ରଶଂସା ରାଜ୍ୟଯାକ ବ୍ୟାପିଗଲା । ଲୋକମାନେ ବୁଝିପାରିଲେ, ଦଣ୍ଡବିଧାନର କଳାବିଦ୍ୟାରେ ରାଜା ଅନନ୍ୟପ୍ରତିଦ୍ୱନ୍ଦ୍ୱୀ । ଏହା ପୂର୍ବରୁ ରାଜ୍ୟର ଯାବତୀୟ ବିଭାଗରେ ବାକ୍ୟବାଗୀଶଙ୍କ ସଂଖ୍ୟା ବଢିଯାଇଥିଲା; ସେଥିପାଇଁ ରାଜକାର୍ଯ୍ୟର ଗତି ବଡ଼ ମନ୍ଥର ହୋଇଥିଲା । କିନ୍ତୁ ଖିପିଲର ଦଣ୍ଡବିଧାନ ପରେ ସାହପେଇଙ୍କ ରାଜ୍ୟରେ ଅତି ଅଳ୍ପ ଲୋକ କାର୍ଯ୍ୟ ବିନା କେବଳ ବାକ୍ୟାଡମ୍ବରରେ ରାଜ-ଅନୁଗ୍ରହ ଲାଭ କରିବାକୁ ଚେଷ୍ଟା କଲେ ।

---

Printed by B. K. Kar, at the Saraswata Press, Cuttack. 1937